# ଭାଷା-ଭୂଷଣ

ଲେଖକ
ଶ୍ରୀ ପ୍ରିୟନାଥ ଦେ



ବିଶ୍ୱ ବୁକସ୍

**ଭାଷା-ଭୂଷଣ**

*ଲେଖକ*
ଶ୍ରୀ ପ୍ରିୟନାଥ ଦେ

*ପ୍ରକାଶକ*
**ବିଶ୍ୱ ବୁକ୍ସ**
ବାଲୁ ବଜାର, କଟକ-୭୫୩ ୦୦୨

*ପ୍ରାପ୍ତିସ୍ଥାନ*
**ଓଡ଼ିଶା ବୁକ୍ ଷ୍ଟୋର**
ବିନୋଦ ବିହାରୀ, କଟକ-୭୫୩ ୦୦୨

*ପ୍ରଥମ ସଂସ୍କରଣ : ୨୦୦୧*

*ଟାଇପ୍‌ସେଟ୍ :*
**ଶ୍ରୀରାମ ଡି.ଟି.ପି. ସେଣ୍ଟର**
ପିଠାପୁର, କଟକ-୭୫୩୦୦୯

*ମୁଦ୍ରଣ :* ଇନ୍ଦ୍ରାଣୀ ପ୍ରିଣ୍ଟର୍ସ, କଟକ

***BHASA-BHUSANA***

*By*
**Shri Priyanath Dey**

*Published by*
BISWA BOOKS
Balu Bazar, Cuttack - 753 002

*Available at*
ORISSA BOOK STORE
Binod Behari, Cuttack - 753 002

**Ist Edition - 2001**

**PRICE : Rs. 15/-**

ISBN 81 - 86091 - 13 - 0

# ପ୍ରାକ୍‌କଥନ

ପ୍ରତ୍ୟେକ ଭାଷାରେ ଏପରି କେତେକ କଥା ପ୍ରଚଳିତ ଅଛି ଯାହାର ଆକାର ଖୁବ୍ ସଂକ୍ଷିପ୍ତ, ମାତ୍ର ତାହା ଭାବକୁ ବେଶ୍ ସ୍ପଷ୍ଟଭାବରେ ପ୍ରକାଶ କରିଥାଏ । ଏହା ଭାଷାର ସୌନ୍ଦର୍ଯ୍ୟ ମଧ୍ୟ ବୃଦ୍ଧି କରିଥାଏ । ବ୍ୟାକରଣରେ ଏହାକୁ ରୂଢ଼ି ପ୍ରୟୋଗ କୁହାଯାଏ । ବିଭିନ୍ନ ଭାଷାରେ ବ୍ୟବହୃତ କେତୋଟି ରୂଢ଼ି ପ୍ରୟୋଗ ଏଠାରେ ଦୃଷ୍ଟାନ୍ତ ସ୍ୱରୂପ ଦିଆଯାଉଛି । ହିନ୍ଦୀରେ କୌଣସି କାର୍ଯ୍ୟର 'ଶ୍ରୀ ଗଣେଶ' କରିବା କହିଲେ ଶୁଭାରମ୍ଭ ବୁଝାଏ । ସଂସ୍କୃତରେ 'ଏରଣ୍ଡୋପି ଦ୍ରୁମାୟତେ'ର ଅର୍ଥ ବିଦ୍ୟାହୀନ ଅଞ୍ଚଳରେ ସାମାନ୍ୟ ପାଠୁଆ ଅଟେ । ବଙ୍ଗଳାରେ 'ଇଂଚଡ଼ ପାକା' କହିଲେ ଅଳ୍ପ ବୟସର ପିଲା ପୁରୁଖା ଲୋକଙ୍କ ଭଳି ବ୍ୟବହାର ଦେଖାଇବା ବୁଝାଏ । ଉର୍ଦ୍ଦୁରେ 'ତୁମ୍ ତୋ ଇଦ୍ କା ଚାନ୍ଦ ବନ୍‌ଗୟା' ର ଅର୍ଥ ଦୁର୍ଲଭ ଓ ମୂଲ୍ୟବାନ୍ ବ୍ୟକ୍ତିର ବହୁ ଆକାଂକ୍ଷିତ ଦର୍ଶନକୁ ବୁଝାଏ । ଇଂରାଜୀରେ 'Tit for tat' କହିଲେ ଯେସାକୁ ତେସା ବୁଝାଯାଏ ।

ଏହି କ୍ଷୁଦ୍ର ପୁସ୍ତିକାରେ ଓଡ଼ିଆରେ ପ୍ରଚଳିତ କେତେକ କଥା ଦିଆଗଲା । ବିଭିନ୍ନ ଅଞ୍ଚଳରେ ସହରଠାରୁ ଗାଆଁ ପର୍ଯ୍ୟନ୍ତ ଅନେକ ଏହିପରି କଥା କୁହାଯାଏ । ଭାଷାର ସମୃଦ୍ଧି ପ୍ରତି ଆଗ୍ରହ ରଖିଥିବା ବ୍ୟକ୍ତିଗଣ ସେଗୁଡ଼ିକୁ ସଂଗ୍ରହକରି ଏହାର କଳେବର ବୃଦ୍ଧି କରିପାରିବେ ।

ଶିକ୍ଷକ-ଶିକ୍ଷୟିତ୍ରୀଗଣ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ସ୍ତରର ଛାତ୍ରଛାତ୍ରୀଙ୍କର ଏଥିପ୍ରତି ଦୃଷ୍ଟି ଆକର୍ଷଣ କଲେ ସେମାନଙ୍କର ଭାଷାଜ୍ଞାନ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଦୃଷ୍ଟି କୋଣ ପ୍ରସାରିତ ହେବ, ସଂହତିର ବନ୍ଧନ ସୁଦୃଢ଼ ହେବ ।

ସଂଗ୍ରାହକ

ପ୍ରିୟନାଥ ଦେ

# ମୁଖବନ୍ଧ

ସ୍ୱାଧୀନତା-ସଂଗ୍ରାମୀ, ପୂର୍ବତନ ବିଧାୟକ , ଅବସରପ୍ରାପ୍ତ ପ୍ରଧାନ-ଶିକ୍ଷକ ଶ୍ରୀଯୁକ୍ତ ପ୍ରିୟନାଥ ଦେ ଓଡ଼ିଶାର ଶିକ୍ଷା ଓ ସାଂସ୍କୃତିକ ଜୀବନରେ ଏକ ପ୍ରବାଦ ପୁରୁଷ । ନିଷ୍ଠା, ସଦାଚାର ଓ ସହୃଦୟତାରେ ବଳିଷ୍ଠ, ଏହି ବ୍ୟକ୍ତିତ୍ୱ ନିଃସ୍ୱାର୍ଥ ସାହିତ୍ୟ ସାଧନାରେ ଋଦ୍ଧିମନ୍ତ କରିଛନ୍ତି ଓଡ଼ିଆ ସାହିତ୍ୟ ଗନ୍ତାଘରକୁ । 'ଶ୍ରୀ ଚୈତନ୍ୟ-ଚରିତାମୃତ', ରୂପଗୋସ୍ୱାମୀକୃତ 'ଭକ୍ତିରସାମୃତ ସିନ୍ଧୁ', 'ଆତ୍ମବିଜ୍ଞାନ' ଓ 'ଈଶୋପନିଷଦ'ର ସରଳ ଉତ୍କଳାନୁବାଦ କରି ଜଣେ ବିଶିଷ୍ଟ ଅନୁବାଦକ ଭାବେ ନିଜକୁ ପ୍ରତିଷ୍ଠିତ କରାଇ ପାରିଛନ୍ତି ଶ୍ରୀଯୁକ୍ତ ଦେ ।

ଭାଷାକୁ ଠିକ୍‌ରୂପେ ପ୍ରୟୋଗ କରିବା ପାଇଁ ଜୀବନସାରା ସାଧନାରତ ଶିକ୍ଷକ ଶ୍ରୀଯୁକ୍ତ ଦେ ସଂଗ୍ରହ କରିଛନ୍ତି କେତେକ ପ୍ରଚଳିତ ଲୋକକଥା ବା ରୂଢ଼ି ଏ ପୁସ୍ତିକାଟିରେ । ଏ ସମସ୍ତ ସାହିତ୍ୟର ସମ୍ପଦ । ଆଜି Civil Service ପରୀକ୍ଷାମାନଙ୍କରେ ଭାଷାପତ୍ରରେ ଏ କ୍ଷେତ୍ରରେ ଜ୍ଞାନକୁ ଅଗ୍ରାଧିକାର ଦିଆଯାଉଥିବାବେଳେ ପୁସ୍ତିକାଟିର ପ୍ରାସଙ୍ଗିକତା ଯଥେଷ୍ଟ ।

ଛାତ୍ରଛାତ୍ରୀ, ଲେଖକ ଓ ଗବେଷକଙ୍କ ନିକଟରେ ରୂଢ଼ିର ଏକ ସ୍ୱତନ୍ତ୍ର ପୁସ୍ତକର ଆବଶ୍ୟକତା ବହୁତ । ଏଦିଗରେ ଶ୍ରୀଯୁକ୍ତ ଦେ'ଙ୍କ ପ୍ରୟାସ ସ୍ୱାଗତଯୋଗ୍ୟ । ଏ ପୁସ୍ତିକା ପାଠକ ମହଲେ ଆଦୃତହେବ କହିବା ବାହୁଲ୍ୟ ମାତ୍ର ।

ଅଧ୍ୟାପକ ସତ୍ୟାନନ୍ଦ ସ୍ୱାଇଁ
ଜବାହରଲାଲ ନେହେରୁ କଲେଜ
କୁଆଁପାଳ,କଟକ

# ପ୍ରଥମ ଅଧ୍ୟାୟ

## ଅ

ଅନ୍ନ ବିହୁନେ ହଂଶ ହାନି
ଯୋଗ ସାଧିବ କାହା ଘେନି– ଖାଦ୍ୟ ଅଭାବରୁ ସାଧନାରେ ବିଘ୍ନ ଘଟେ ।

ଅଖ ବୁଲୁଥାଏ, ଚକ ବୁଲୁଥାଏ, ବୁଲି ପଡୁଥାଏ ମହି
ସଂସାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସହି ।– ସଂସାର ପରିବର୍ତ୍ତନଶୀଳ; ଏଠାରେ ସୁଖ-ଦୁଃଖ ସବୁ ଭୋଗ କରିବାକୁ ହୁଏ ।

ଅଗସ୍ତି କଲେ ଦାନ
କଷା ଗୁଆକୁ ପଚା ପାନ– ନିକୃଷ୍ଟ ଦାନ

ଅଙ୍ଗୁଳି ପ୍ରବେଶାତ୍
ବାହୁ ପ୍ରବେଶ– ପ୍ରଥମେ ଅଳ୍ପ ଅଧିକାର କରି ପରେ ବେଶୀ ଦଖଲ କରିବା ।

ଅବୁଝାମଣା ରଜାକୁ
ପାଳବିଣ୍ଡା ମନ୍ତ୍ରୀ– ଅଯୋଗ୍ୟ ରଜାକୁ ଅଯୋଗ୍ୟ ମନ୍ତ୍ରୀ

ଅପାଳକ ରାଇଜରେ ବିଜୁଳି ଲକ୍ଷେ ଟଙ୍କା– ବର୍ଷା ହେଉ ନଥିବା ଅଞ୍ଚଳରେ ବିଜୁଳି ମାରିବା ଦେଖାଯାଏ ନାହିଁ ।

ଅଠପା ମଣ୍ଡପ– ନାନା ଅସୁବିଧା ଥିବା ସ୍ଥାନ ।

ଅନ୍ଧାରରେ ବାଡ଼ି ବୁଲେଇବା– ଠିକ୍ କଥା ନଜାଣି ଅନୁମାନରେ କିଛି କହିବା ବା କରିବା ।

ଅଗିରାକୁ ବାଇଗଣ ପକେଇବା– ମିଳିଲେ ମିଳିବ ନହେଲେ ନାହିଁ ।

ଅଣଚାଶ ପବନ ବହିବା– ମୃତ୍ୟୁ ନିକଟ ହେବା ।

ଅଧର୍ମ ବିତ୍ତ ବଢ଼େ ବହୁତ
ଗଲାବେଳେ ଯାଏ ମୂଳ ସହିତ– ଅସାଧୁ ଉପାୟରେ ଅର୍ଜିତ ଧନ ନଷ୍ଟ ହୋଇଯାଏ ।

ଅନ୍ଧ ଥରେ ବାଡ଼ି ହଜାଏ– ବାଡ଼ି ହଜିଲେ କି ଅସୁବିଧା ହୁଏ ତାହା ବୁଝି ଅନ୍ଧ ସତର୍କ ହୁଏ ।

ଅନ୍ଧ ପିଲା ନାଆଁ ପଦ୍ମଲୋଚନ– ଆଖି ନଥିବା ପିଲାର ଏପରି ନାମକରଣ ଅଯୌକ୍ତିକ ।
ଅଣ୍ଟି ଛୁରୀ ତଣ୍ଟି କାଟିବା– ଆପଣାର ଲୋକ ଶତ୍ରୁ ପାଲଟିବା ।
ଅନ୍ତେ ତିକ୍ତ
ଦନ୍ତେ ଲୁଣ– ପୀତା ଖାଇବା ଦେହକୁ ହିତ ।
ଅଠା କାଠିରେ ପଡ଼ିବା– ବିପଦରେ ପଡ଼ିବା ।
ଅହି-ନକୁଳ ସଂପର୍କ– ପରସ୍ପରର ଶତ୍ରୁ ।
ଅନ୍ଧ ଦେଶକୁ ଗଲି ଦର୍ପଣ ବିକି– (କବି ଯଦୁମଣି ଲେଖା) ଯେଉଁଠାରେ ପ୍ରତିଭାର ଉପଯୁକ୍ତ ସମ୍ମାନ ମିଳେନାହିଁ ।
ଅକର୍ମା ଭୂମି ନିନ୍ଦନ୍ତି– ବହୁ ଜୀବଙ୍କୁ ଆହାର ଯୋଗାଉଥିବା ମାଟି-ମାଆକୁ କେବଳ ଅକର୍ମା ଲୋକ ନିନ୍ଦା କରନ୍ତି ।
ଅମୀନ-ଜାମିନ-ମଧ୍ୟସ୍ଥି, ହେବନାହିଁ ବୋଲି କହି ଯାଇଛନ୍ତି ଅଗସ୍ତି– ଏହି ତିନିଜଣଙ୍କୁ ବହୁ ଦୋଷ ମୁଣ୍ଡାଇବାକୁ ହୁଏ-ଅପମାନ ସହିବାକୁ ପଡ଼େ ।
ଅଟକଳ ନଜାଣି ମୁଷଳରେ ହାତଦେବା– ଶକ୍ତିର ବହିର୍ଭୂତ କାର୍ଯ୍ୟ କରିବାର ଇଚ୍ଛା ।
ଅଜଣା ଚାଉଳର ଭାତ ଖାଇବା– ବାହାର ଦୁନିଆର ଖବର ନ ରଖିବା ।
ଅଲଣା ସୁଆଗ– ସ୍ୱାର୍ଥତ୍ୟାଗ ନକରି ଭଲ ପାଇବାର ଛଳନା ।
ଅସନ କାଠ ଭଳି ଲୋକ– ଅତ୍ୟନ୍ତ କୃପଣ ।
ଅଖା ଧୋଉଥିବ
ଗୁଣ ଗାଉଥିବ– କୌଣସି ମନ୍ଦ ଲୋକର ଅବିଗୁଣକୁ ହେଜି ହେଉଥିବ ।
ଅକାଳେ ମାଇଲି ଘାଏ
ଗଲା ଶିରାବଣ ଯାଏ– ସାମାନ୍ୟ କାମପାଇଁ ବହୁଦିନ ବ୍ୟସ୍ତ ହେବା ।
ଅରଣ୍ୟ ରୋଦନ– ବୃଥା ପ୍ରାର୍ଥନା ।
ଅଛାଭୁଆ– ହତବୁଦ୍ଧି ହୋଇଯିବା ।
ଅଳପ ଧନ ବିକଳ ମନ– ଅଳ୍ପ ସମ୍ପତ୍ତି ଥିବା ଲୋକ ଖୁସିରେ ଖର୍ଚ୍ଚକରି ପାରେନା ।
ଅନ୍ନଚିନ୍ତା ଚମତ୍କାରା କାତରେ କବିତା କୁତଃ ?– ଦାରିଦ୍ର୍ୟ ଦୋଷ କେତେ ପ୍ରତିଭାକୁ ନଷ୍ଟ କରିଦିଏ ।
ଅଜାଗା ଘାଆ ଦେଖିହୁଏ ନାହିଁ କି ଦେଖାଇ ହୁଏନାହିଁ– ନିଜ ଲୋକର ଖରାପ ବ୍ୟବହାର କହି ହୁଏନାହିଁ ।
ଅଳ୍ପ ବିଦ୍ୟା ଭୟଙ୍କରୀ– ଅଳ୍ପଜ୍ଞାନ ଥିବା ଲୋକ ବଡ଼ ବୋଲେଇବାକୁ ଯାଇ ବିଷମ ବିପଦ ସୃଷ୍ଟିକରେ ।

ଅତି ପରିଚୟେ ଗୌରବ ନଷ୍ଟ– ବନ୍ଧୁଲୋକ ବେଶୀ ଯା-ଆସ କଲେ ସମ୍ମାନ ରହେନାହିଁ ।

ଅରକ୍ଷିତକୁ ଦଇବ ସାହା– ଅସହାୟ ଲୋକର ଭଗବାନ ଭରସା ।

ଅର୍ଥମନର୍ଥଂ ଭାବୟ ନିତ୍ୟଂ– ଟଙ୍କା ପଇସା ସବୁବେଳେ ଆବଶ୍ୟକ, ମାତ୍ର ସବୁ ଗଣ୍ଡଗୋଳର ମୂଳ ।

ଅସିର ବଳଠାରୁ ମସୀର ବଳ ବେଶୀ– ଖଣ୍ଡା ସାହାଯ୍ୟରେ ଅଳ୍ପ ଲୋକକୁ ଜୟ କରାଯାଏ, ମାତ୍ର କଲମ ବଳରେ ବହୁ ଲୋକଙ୍କୁ ପ୍ରଭାବିତ କରାଯାଏ ।

ଅନ୍ଧେନୈବ ନୀୟମାନା ଯଥାନ୍ଧାଃ– ଜଣେ ଅନ୍ଧ ଅନ୍ୟ ଜଣେ ଅନ୍ଧକୁ ବାଟ ଦେଖାଇ ପାରେନା, ସେପରି ଚେଷ୍ଟା ବିପଦରେ ପକାଇଥାଏ ।

ଅଳସୁଆ ଘୋଡ଼ାକୁ ମେଘ ଆଶ୍ରା– ମେଘ ହେଲେ ତିନ୍ତିଯିବା ଭୟରେ କେହି ଘୋଡ଼ାରେ ଯିବାକୁ ଇଚ୍ଛା କରେ ନାହିଁ, ତାହା ଅଳସୁଆ ଘୋଡ଼ାକୁ ସୁହାଏ ।

ଅକଲ ଗୁଡୁମ୍ – ବୁଦ୍ଧି ହଜିଯିବା ।

ଅଜାତିକୁ ବଣିଜ ଅଡୁଆ – ନିଜ ଜାତି ଲୋକଙ୍କ ଭିତରେ ବ୍ୟବହାର ସହଜ ।

ଅତିଭକ୍ତି ଚୋରର ଲକ୍ଷଣ – ଲୋକ ଦେଖାଣିଆ ବ୍ୟବହାର ସତ୍‌ଲୋକଙ୍କ କାମ ନୁହେଁ ।

ଅକାଳ କୁଷ୍ମାଣ୍ଡ – ନିର୍ବୋଧ କର୍ମକୁଣ୍ଠ ବ୍ୟକ୍ତି ।

ଅଣେଇ ପଡ଼ିବ ନାହିଁ – ଅସୁବିଧା ଘଟିବ ନାହିଁ ।

ଅନ୍ଧର ଲଉଡ଼ି – ଅଭାବି ଲୋକର ଅଳ୍ପ ସମ୍ବଳ/ ଅବଲମ୍ବନ ।

ଅଗଡ଼ମ୍ ବଗଡ଼ମ୍ – ଏଣୁତେଣୁ ।

ଅନ୍ଧାରି ବିଜେ – ଗୁପ୍ତରେ ଲୋକଙ୍କ ଖବର ବୁଝିବା ।

ଅନ୍ଧାରୀ ଶାସନ ଚୌପଟ ରାଜା – ଆଇନହୀନ ଶାସନରେ ଅତ୍ୟାଚାରୀ ରାଜା ।

# ଆ।

ଆକାଶ କୁସୁମ– ଅସମ୍ଭବ କଳ୍ପନା

ଆକାଶ କଇଁଆ-ଚିଲିକା ମାଛ– ଦୁରୂହ ବ୍ୟାପାର ।

ଆପେ ବଣିଜ-ପୁତେ ଚାଷ– ବେପାର-ବଣିଜ ନିଜେ କରିବ, ଚାଷକାମ ପୁଅ ଦ୍ୱାରା କରାଇବ ।

ଆରେ ଢ଼ମଣା ବୁଲି ବୁଲି କରି ସେହି ଅଗଣା– ବେଶୀ ଦୂରକୁ ନଯାଇ ଘର ପାଖରେ ନଙ୍ଗରପଙ୍ଗର ହେବା ।

ଆ'ଲୋ ମୁତୁରୀ ଶୋଇବା, ତୁ'ତ' ମୁତୁରୀ ମୁଁ'ତ ମୁତୁରୀ ହେଁସ କାହିଁ ପାଇଁ ଧୋଇବା ?–ଏକାଭଳି ଦୋଷ କରୁଥିବା ଦୁଇ ଲୋକ ।

ଆମ୍ବ ଘର ପୁଅକୁ ଆମ୍ବଡ଼ା ଦେଇ ଭଣ୍ଡେଇବା– ଅସଲି ଜିନିଷ ବଦଳରେ ନକଲି ଜିନିଷ ଦେଇ ଠକେଇବା ।

ଆଖୁବଣରେ ପଶିବା– କେଉଁ ଜିନିଷକୁ ନେବ ସ୍ଥିର କରି ନପାରିବା ।

ଆଖୁ ଖଣ୍ଡେ ଦେବ ନାହିଁ ଗୁଡ଼ ଖଣ୍ଡେ ଦେବ – ଅଳ୍ପ ସ୍ୱାର୍ଥ ତ୍ୟାଗ ନକରି ପଛରେ ବେଶୀ ଦେବାକୁ ବାଧ୍ୟ ହେବା ।

ଆଜିକ ଗଲେ କାଲିକ, ଫଟା ସିନ୍ଦୁକର ମାଲିକ– ଦୁନିଆର ସବୁକିଛି କ୍ଷଣସ୍ଥାୟୀ ।

ଆ ବଳଦ ମୋତେ ବିନ୍ଧ– ଜାଣିଶୁଣି ବିପଦକୁ ଡାକି ଆଣିବା ।

ଆପଣା ସୁନା ଭେଣ୍ଡି– ନିଜ ଲୋକର ଅଯୋଗ୍ୟତା ।

ଆପଣା ହସ୍ତେ ଜିହ୍ୱା ଛେଦି, କେ ଅଛି ତା'ର ପ୍ରତିବାଦୀ– ନିଜ ଦୋଷ ପାଇଁ ନିଜେ ଦାୟୀ ।

ଆପଣା ଦହିକୁ କେହି ଖଟା କହେ ନାହିଁ– ନିଜ ଜିନିଷକୁ ସମସ୍ତେ ପ୍ରଶଂସା କରନ୍ତି ।

ଆପଣା ହାତ ଜଗନ୍ନାଥ– ନିଜ ଉପାର୍ଜନ ସବୁଠୁ ବଡ଼ ସମ୍ପଦ ।

ଆଲୁ ଖୋଳୁ ଖୋଳୁ ମହାଦେବ ବାହାରିବା– ସାମାନ୍ୟ କଥାରୁ ବିଷମ ସମସ୍ୟା ଉପୁଜିବା ।

ଆକାଶ ପାତାଳ ଫରକ– ବହୁ ତଫାତ୍ ।

ଆଖିରେ ଧୂଳି ଦେବା– ଠକିବା ।

ଆଖି ଦେଖାଇବା– ଡରାଇବା ।

ଆଖି ପକାଇବା– ଲୋଭ କରିବା ।

ଆଗତ ପଞ୍ଝା, ସବୁ କଞ୍ଝା– ବହୁ ପୂର୍ବରୁ ଦୂର ଭବିଷ୍ୟତ କଥା ଭାବି ଲାଭ ନାହିଁ ।

ଆଦର ନଥାଇ ଯେଉଁ ଭୋଜନ
ଗାମୁଛା ନଥାଇ ଯେଉଁ ସ୍ନାହାନ– ଗାମୁଛା ବିନା ଗାଧୋଇବା ଯେପରି ସୁଖକର ନୁହେଁ, ଆଦରହୀନ ଭୋଜନ ସେହିପରି ସନ୍ତୋଷ ଦିଏ ନାହିଁ ।

ଆଲୁ ଗାଡ଼ରେ ପଡ଼ିବା– ଅସୁବିଧାରେ ପଡ଼ିଯିବା ।

ଆଲୁଅ ହେଇଯିବା– ଅସୁବିଧା ଘଟିବା ।

ଆହାରେ ବ୍ୟବହାରେ ଚ ତ୍ୟକ୍ତଲଜ୍ଜ ସୁଖୀ ଭବେତ୍– ବ୍ୟବହାରରେ ଲଜ୍ଜା ବର୍ଜନୀୟ ।

ଆଣ୍ଠେଇ ପଡ଼ିଥିବ ଯେତିକିବେଳେ, ବିଧାଏ ମାରିବ ସେତିକିବେଳେ—ଅସୁବିଧାରେ ପଡ଼ିଥିବାବେଳେ ଶତ୍ରୁକୁ ଆକ୍ରମଣ କରିବା ।

## ଇ-ଈ

ଇଡ଼ିଗଲା କ୍ଷୀର ପାଇଁ ଶୋଚନା କରି କି ଲାଭ ?— ଯାହା ଘଟିଗଲାଣି, ସେଥିପାଇଁ ବ୍ୟସ୍ତହେବା ଉଚିତ ନୁହେଁ ।

ଇସ୍ତକ୍‌ବିନ୍ତୀ କାବାର— ଏକ ବିଜୟ ହାସଲ କରିବା ।

ଇଚ୍ଛନ୍ତି ଦାମ୍ଭିକେ ହସ୍ତେ ରଖିବାକୁ ସମସ୍ତଙ୍କ ଭାଗ୍ୟ ଡୋରି,
ନିଜ ଭାଗ୍ୟଡୋରି କାଳହସ୍ତେ ଏହା ପକାନ୍ତି ହେଲେ ପାସୋରି ।(କବିବର)

ଇନ୍ଦ୍ର ଚନ୍ଦ୍ର ନ ମାନିବା— କାହାକୁ ଖାତିର ନ କରିବା ।

ଇଚ୍ଛା ଥିଲେ ଉପାୟ ବଳେ ବଳେ ଆସେ— ଉଦ୍‌ଯୋଗ କଲେ କାର୍ଯ୍ୟ ସିଦ୍ଧ ହୁଏ ।

ଇଦମିଥ— କଥାର କିଛି ଅଂଶ

ଇଷ୍ଟ ସୁମରଣା କରିବା— ବିପଦରେ ପଡ଼ିଲେ କୁଳ ଦେବତାଙ୍କୁ ଡାକିବା ।

## ଉ-ଊ

ଉଧାର ସେରକ ପାଞ୍ଚ ପାଆ— ଯେପରି କାର୍ଯ୍ୟ କରିବ, ତାହାଠାରୁ ଅଧିକ ଫଳ ପାଇବ ।

ଉଚପିଣ୍ଡା ଦେଖି ବସିବ,କୋକିଳ ପରାଏ ଭାଷିବ— ଉଚ୍ଚ-ଚିନ୍ତା ଥିବା ଲୋକସହିତ ବନ୍ଧୁବାନ୍ଧିବ ଏବଂ ଭଦ୍ରଭାବରେ କଥା କହିବ ।

ଉଷୁନା ଧାନ ଗଜା ହେବା— ଆଶା ହରାଇଥିବା ଲୋକର ପୁଣି ଆଶା ସଞ୍ଚାର ହେବା ।

ଉଡ଼ି ନଜାଣି ପୋଷା ମାନିଛି— ଅନ୍ୟ ଉପାୟ ନପାଇ ବାଧ୍ୟହୋଇ ବଶତା ସ୍ୱୀକାର କରିଛି ।

ଉଡ଼ିଗଲା ଚଢ଼େଇର ପର ଗଣିଦେବ— ଅତ୍ୟନ୍ତ ବୁଦ୍ଧିମାନ୍ ଲୋକ ।

ଉଭାଇଗଲେ ନଭୁ ଜ୍ୟୋତିଷଗଣ, ଜ୍ୟୋତି ଦେଖାଇ ହେଲେ ଜ୍ୟୋତିରିଙ୍ଗଣ—ବିଜ୍ଞ ଓ ବିଦ୍ୱାନ୍ ବ୍ୟକ୍ତିଙ୍କ ଅନୁପସ୍ଥିତିରେ ମୂର୍ଖ ଲୋକ ନିଜର ବାହାଦୁରୀ ଦେଖାନ୍ତି ।

ଉଜାଣି ବୋହିବା– ବିପରୀତ କଥା ଘଟିବା ।

ଉଚ୍ଚ ପରବତ କୁଞ୍ଚ କୁଞ୍ଚିକା– ଦୂର ବନ୍ଧୁ ସୁନ୍ଦର ।

ଉପରେ ପଡ଼ି କଖାରୁ ବଡ଼ି– ନ ପଚାରୁଣୁ କଥା କହିବା ।

## ଋ

ଋଣଂ କୃତ୍ୱା ଘୃତମ୍ ପିବେତ୍– ଋଣ ହେଉ ପଛେ ଆଡ଼ମ୍ବରପୂର୍ଣ୍ଣ ଜୀବନ ଯାପନ କରିବା ।

ଋଷି ଜଟା ଛିଣ୍ଡେଇବ ଏ କଥାରେ– କଟୁକଥା ଅସହ୍ୟ ହୁଏ ।

## ଏ

ଏକଶ୍ଚନ୍ଦ୍ର ତମୋହନ୍ତି, ନଚ ତାରା ଗଣୈରପି ।– ପଲେ ଅଯୋଗ୍ୟ ସନ୍ତାନ ନହୋଇ ଗୋଟିଏ ଯୋଗ୍ୟ ସନ୍ତାନ କୁଳର ଯଶ ବୃଦ୍ଧି କରେ ।

ଏକ ବାଣରେ ଦୁଇ ପକ୍ଷୀ ଶିକାର କରିବା– ଗୋଟିଏ କାର୍ଯ୍ୟ ଦ୍ୱାରା ଦୁଇଗୋଟି ଲକ୍ଷ୍ୟ ହାସଲ କରିବା ।

ଏରଣ୍ଡୋପି ଦ୍ରୁମାୟତେ– ଅପାଠୁଆ ରାଇଜରେ ଦରପାଠୁଆ ଲୋକ ନିଜକୁ ବିଦ୍ୱାନ୍ ବୋଲି ଦେଖେଇ ହୁଏ ।

ଏକା-ଡଙ୍ଗାରେ ବସିବା– ସମାନ ଅବସ୍ଥାରେ ଥିବା ।

ଏଣ୍ଡୁଅ ଦଉଡ଼ି ଦଉଡ଼ି ସିଜୁବୁଦା ମୂଳକୁ– କାହାର କେତେ କରାମତି ତାହା ଜଣା ଅଛି ।

ଏକୋଇର ବଳା ବିଶିକେଶନ– ପିତାମାତାଙ୍କର ଏକମାତ୍ର ସନ୍ତାନ ।

ଏକ ଆଖି ଆଖି ନୁହେଁ, ଏକ ସାକ୍ଷୀ ସାକ୍ଷୀ ନୁହେଁ– ଗୋଟିଏ ସନ୍ତାନ ଯଥେଷ୍ଟ ନୁହେଁ ।

ଏକା ନଈ ସହସ୍ର କୋଶ– ଘାଟରେ ଡଙ୍ଗା ନଥିଲେ ନଈ ପାରି ହେବାକୁ ବହୁ ସମୟ ଅପେକ୍ଷା କରିବାକୁ ପଡ଼େ ।

ଏକା ମାଘକେ ଶୀତ ଯାଏ ନାହିଁ– ଥରକରେ ସବୁ ଅସୁବିଧା ଦୂର ହୋଇଯାଏ ନାହିଁ ।

ଏ ଘର ମାଉସୀ ସେ ଘର ପିଉସୀ– ଏଠି ସେଠି ଛିଦ୍ର କହି ଯିଏ କଳି ଲଗାଏ ।

ଏଣୁ ମାଇଲେ ଗୋହତ୍ୟା, ତେଣୁ ମାଇଲେ ବ୍ରହ୍ମହତ୍ୟା– ଦୋଘାଇରେ ପଡ଼ି କର୍ତ୍ତବ୍ୟ ସ୍ଥିର କରି ନ ପାରିବା ।

ଏଇ କଥାକୁ, ନାଆ ପେଲି ଦେଲି କଲିକତାକୁ– ସାମାନ୍ୟ କଥା ପାଇଁ ବିଶେଷ ଚିନ୍ତା କରିବାର ନାହିଁ ।

ଏକ ହାତରେ ତାଳି ବାଜେ ନାହିଁ– କଳି କରିବାକୁ ଦୁଇଜଣ ଲୋଡ଼ା ।

ଏକା ମାଧିଆ ବାଇଶିପଲ– ଜଣେ ବଳବାନ୍ ଲୋକର ପ୍ରଚଣ୍ଡ ସାମର୍ଥ୍ୟ ।

ଏକା ନାଉର ମଞ୍ଜି– ସମାନ ଧରଣର ସ୍ୱଭାବ ଚରିତ୍ର ।

ଏକା ଗଳିର କୁଭା– ସମାନ ଗୁଣସଂପନ୍ନ ।

ଏସା କରେଙ୍ଗେ ତେସା କରେଙ୍ଗେ, ସିପାହୀ ଦେଖିଲେ ଶୋଇ ପଡ଼େଙ୍ଗେ– ଭୀରୁତାର ଚିତ୍ର ।

ଏ କାନରେ ପୂରେଇ ସେ କାନରେ ବାହାର କରିଦେବା– ଶୀଘ୍ର ଭୁଲିଯିବା ।

ଏକୁଟିଆ ବାଆଁରା, ମୁଣ୍ଡି ମୁଣ୍ଡି ସାହାଡ଼ା– ଗୋଠ ଖଣ୍ଡିଆ ।

## ଓ

ଓଧ ସାଙ୍ଗରେ ଭୁଆଁ ବିରାଡ଼ି ବାଇ– ନିଜ ଶକ୍ତିର ସୀମା ନଜାଣି ଅନ୍ୟଭଳି ହେବାକୁ ଚେଷ୍ଟା କରିବା ।

ଓଳିଆରୁ ପଡ଼ି ଗଜା– ମୂଳରୁ ହୁସିଆର୍ ।

ଓଢ଼ଣା ପଡ଼ିଛି ନାକ ସରିକି-ପାଟି ଶୁଭୁଅଛି ଚଉପାଢ଼ିକି– ଓଢ଼ଣା ପକାଉଥିବା ନୂଆବୋହୂ ହୋଇ ମଧ୍ୟ ଝଗଡ଼ା କରିବାରେ ଧୁରନ୍ଧର ।

ଓଷଧ ନ ଖାଇ ତାଟିଆ କାମୁଡ଼ିବା– ପ୍ରକୃତ କଥାକୁ ଦୃଷ୍ଟି ନଦେଇ ଅଯଥାରେ ଦୋଷ ଦେବା ।

ଓଟ ମୁହଁରେ ଜୀରା– ଅତି ଅଳ୍ପ ଖାଇବାକୁ ଦେବା ।

ଓଳେଇର ପିଠା ବାମରେ ସିଝେ– ଲୋଭୀ ମଣିଷର ପିଠା ସିଝିବା ପର୍ଯ୍ୟନ୍ତ ଧୈର୍ଯ୍ୟ ନଥାଏ ।

ଓହ୍ଲାଇଲା ହାଣ୍ଡି ଶୀତଳ– ଆଜି ଯାହା କରିପାରିବ, କାଲିକୁ ତାହା ରଖ ନାହିଁ ।

# କ

କିଂ କାଳେ କିଂ ଭବିଷ୍ୟତି— କେତେବେଳେ କଅଣ ଘଟିବ, କେହି କହି ପାରିବ ନାହିଁ ।

କିଏ ଡାଳେ ଡାଳେ ଗଲେ ସିଏ ପତରେ ପତରେ ଯାଏ— ସିଏ ଅଧିକ ବୁଦ୍ଧିମାନ୍ ।

କୁକୁର ଲାଙ୍ଗୁଡ଼ ବାର ବରଷରେ ମଧ୍ୟ ସିଧା ହୁଏ ନାହିଁ— କେତେକ କଥା ଅପରିବର୍ତ୍ତନୀୟ ।

କିଏ କହୁଛି କାହା କଥା, କାଣୀ କହୁଛି ମୋ ଦିଅର କଥା— କେହି କିଛି କହିଲେ ତାହା ନିଜ ଆଡ଼କୁ ଟାଣିନେବା ।

କାଣୀ ବିଲେଇର ଅସରପା ଉପରେ ଟାଣ— ଦୁର୍ବଳ ପ୍ରାଣୀ ମଧ୍ୟ ତା'ଠାରୁ ଅଧିକ ଦୁର୍ବଳ ପ୍ରାଣୀକୁ ଆକ୍ରମଣ କରିଥାଏ ।

କେତେବେଳେ ଶଗଡ଼ ଉପରେ ନାଆ ତ' କେତେବେଳେ ନାଆ ଉପରେ ଶଗଡ଼— 'କିଏ କେତେବେଳେ ଉପରକୁ ଉଠିଯାଉଛି ତ' କିଏ କେତେବେଳେ ତଳକୁ ଖସି ଯାଉଛି ।

କଚ୍ଛେ ପୁଅ ବାର— ପଶାଖେଳର ଏକ ଉତ୍ତମ ଦାନ ।

କିସ୍ତୀ ମାତ୍— ଚେସ୍ ଖେଳରେ ବିଜୟ ଲାଭ ।

କାଳୀ ଗାଈର ଭିନେ ଗୋଠ— ଜଣେ ଜଣେ ଦଳର ଶୃଙ୍ଖଳା ମାନି ଚଳିପାରନ୍ତି ନାହିଁ, ଅଲଗା ହୋଇଯାଆନ୍ତି ।

କଣ୍ଟକେ ନୈବ କଣ୍ଟକଂ— କଣ୍ଟା ଦ୍ୱାରା କଣ୍ଟା କାଢ଼ିବା ।
ଦୁଷ୍ଟ ଲୋକକୁ ଅନ୍ୟ ଏକ ଦୁଷ୍ଟ ଲୋକ ଦ୍ୱାରା ଜବତ୍ କରିବା ।

କାଚ ଘରେ ରହୁଥିବା ଲୋକ ଅପରକୁ ଢେ଼ଲା ପକେଇବା— ନିଜ କାର୍ଯ୍ୟ ଦ୍ୱାରା ନିର୍ବୋଧଭାବେ ବିପଦ ବରଣକରିବା ।

କାକର ଧରିଲେ କଅଣ ଘଡ଼ା ପୂର୍ଣ୍ଣ ହେବ ?— ସ୍ୱଳ୍ପ ପରିମାଣରେ କାର୍ଯ୍ୟ ପୂର୍ଣ୍ଣ ହୁଏ ନାହିଁ ।

କପାଳରେ ହାତ ଦେବା— ଭାଗ୍ୟକୁ ନିନ୍ଦିବା ।

କଟା ଘା'ରେ ଚୂନ ଦେବା— ଦୁଃଖ ଉପରେ ଆହୁରି ଦୁଃଖ ଦେବା ।
କୁଟା ଖଣ୍ଡକ ଦି'ଖଣ୍ଡ ନ କରିବା— କିଛି କାର୍ଯ୍ୟ ନ କରିବା ।
କାଚକେନ୍ଦୁ ଭଳିଆ ପାଣି— ଅତି ପରିଷ୍କାର ଜଳ ।
କୋଟିନିଧି ପାଇବା— ଅତିଶୟ ଆନନ୍ଦିତ ହେବା ।
କାଠିଏ ବଳ— ବଡ଼ ବଳୁଆ ।
କଣ୍ଟାବାଡ଼ରେ ଲୁଗା ପକାଇ କଳି କରିବା— ଅଯଥା କଳି ସୃଷ୍ଟି କରିବା ।
କଙ୍କଡ଼ାକୁ ଗୋଳିପାଣି ସୁହାଏ— ମନ୍ଦ ପ୍ରକୃତିର ଲୋକ ଅନ୍ୟଠାରୁ ନିଜକୁ ଲୁଚାଇ ରଖେ ।
କହିବି ନାହିଁ, କହିଲେ ଏ ଘରେ ରହିବି ନାହିଁ— ହକ କଥା କହିଲେ ଅନ୍ୟମାନେ ଅସନ୍ତୁଷ୍ଟ ହୁଅନ୍ତି ।
କହିଲେ କୁଳ କୁଟୁମ୍ବକୁ ଲାଜ, ନକହିଲେ କୁଳ ଭାସି ଯାଉଛି— ସତକଥା କହିଲେ ନିଜ ଲୋକଙ୍କ ଦୋଷ ପଦାରେ ପଡ଼ିଯାଏ, ଆଉ ସତ କଥା ନକହିଲେ ସମାଜର କ୍ଷତି ହୁଏ ।
କୋଉ ବାହାକୁ ଦି'ଗୋଡ଼ରେ ଅଳତା— ସାମାନ୍ୟ କଥାପାଇଁ ଆଡ଼ମ୍ବର କରିବା ।
କାଚ ବଜ୍ର ହେବା— ସ୍ୱାମୀ ଦୀର୍ଘଜୀବୀ ହେବାକୁ କାମନା କରିବା ।
କାଟି ନ ଜାଣି କଟୁରୀ ଦୋଷ— ନିଜେ ଠିକ୍ କାମ କରି ନପାରି ଅନ୍ୟକୁ ଦୋଷ ଦେବା ।
କୁରାଢ଼ି ବେଣ୍ଟରେ କାଠ ରହି ଅନ୍ୟ କାଠକୁ ହାଣେ— ଆପଣା ସାହାଯ୍ୟରେ ଆପଣା ଲୋକକୁ ମରାଇବା ।
କୁମ୍ଭାର ଘର ବୋହୂ, ଝାଟିକୁ ନଗଲେ ମାଟିକୁ ଯାଉ— କାମିକା ଲୋକ ସବୁବେଳେ କିଛି-ନା-କିଛି କାମ କରୁଥାଏ ।
କୁଳ ବୁଡ଼ିଲାବେଳକୁ ଘୋଡ଼ାମୁହାଁ ପୁଅର ଜନ୍ମ— ଅଯୋଗ୍ୟ ପୁଅ ବଂଶର ସମ୍ମାନ ରଖିପାରେ ନାହିଁ ।
କଷ୍ଟକଲେ କୃଷ୍ଣ ମିଳେ— ପରିଶ୍ରମ ସୌଭାଗ୍ୟ ଆଣିଦିଏ ।
କପାଳ ଲିଖନ, କେ କରିବ ଆନ— ଭବିତବ୍ୟ ଅବଶ୍ୟ ଘଟିବ ।
କଳା କନା ବୁଲେଇବା— ସବୁ ଜିନିଷ ଚୋରି କରିନେବା ।

କୁମ୍ଭୀର କାନ୍ଦଣା— ଛଳନା କରି ସହାନୁଭୂତି ଜଣାଇବା ।

କରାଣ୍ଡି ଗୁଛି ଶେଉଳ ଧରିବା— ଅଳ୍ପ ଖର୍ଚ୍ଚକରି ବହୁ ଅଧିକ ଆଦାୟ କରିବା ।

କହି ଦେଉଥାଏ ପରକୁ, ବୁଦ୍ଧି ନ ଦିଶଇ ଘରକୁ— ନିଜ ଘରକୁ ନ ସଜାଡ଼ି ଅନ୍ୟକୁ ଉପଦେଶ ଦେବା ।

କାଳ ଠାର କାଳ ମାଆ ଜାଣେ— ଆପଣା ଲୋକର ବ୍ୟବହାର ନିଜକୁ ଜଣା ।

କଂସାରି ଘର ପାରାକୁ କୁଳା ଡ଼ାଉଁ ଡ଼ାଉଁ— କୌଣସି ବିଷୟରେ ଅଭ୍ୟସ୍ତଥିବା ଲୋକକୁ ସେହି ବିଷୟ ଜଣାଇବା ।

କାଳା ଆଗରେ ମୂଳା ଚୋବାଇବା— ମୂର୍ଖ ନିକଟରେ ତତ୍ତ୍ୱଜ୍ଞାନ ବଖାଣିବା ।

କାକ ସ୍ନାନ— ଅଳ୍ପ ପାଣି ଛିଞ୍ଚି ହୋଇ ଗାଧୋଇ ପଡ଼ିବା ।

କାହାର ପୁଷ ମାସ, କାହାର ସର୍ବନାଶ— କାହାର କ୍ଷତି ତ' କାହାର ଲାଭ ।

କାକ ମଧ୍ୟେ ବକ ଯଥା— ମୂର୍ଖଙ୍କ ମଧ୍ୟରେ ଜ୍ଞାନବାନ୍ ବ୍ୟକ୍ତି ସଦୃଶ ।

କଉଳ ପାତିଆ ଭଲ ଲୋକ— ବିନା ନିମନ୍ତ୍ରଣରେ ଆସି ମଧ୍ୟସ୍ଥ ସାଜିବା ।

କାଉ ନେଇଗଲା କାନ ବୋଲି କାଉ ପଛରେ ଗୋଡ଼ାଇବା— ଶୁଣିବା କଥାକୁ ବିଶ୍ୱାସ କରିବା ।

କୁଳାକ ଚାଉଳ କୁକୁରକୁ ଦେଇ— ବହୁ ସମ୍ପଦ ଅପବ୍ୟବହାର କରି ବ୍ୟସ୍ତ ହେବା ।

କାଚଃ କାଞ୍ଚନ ସଂସର୍ଗାତ୍ ଧତ୍ତେ ମାରକତି-ଦ୍ୟୁତିଂ— ସାଧୁସଙ୍ଗ ଲାଭର ଫଳ ଉତ୍ତମ ।

କହି ଜାଣିଲେ କଥା ସୁନ୍ଦର— ଶୈଳୀ ହେଉଛି ସବୁକିଛି ।

କର୍ପୂର ଯାଇ କନା ପଡ଼ିଛି— ପଦାର୍ଥ ଯାଇଛି, କଥା ରହିଛି ।

କାନ୍ଧରେ ପଡ଼ିଲେ ବଢେଇ ଶିଖେ— ଦାୟିତ୍ୱ ପଡ଼ିଲେ କାମରେ ଲାଗିଯାଏ ।

କାନିକୁ କାନି ଗଅଁଠେଇବା— ଏକତ୍ର ହେବା ।

କାଠିକର ପାଠ— କଷ୍ଟକର

କାଣ୍ଡଜ୍ଞାନ ହୀନ— ସାଧାରଣ ବୁଦ୍ଧିର ଅଭାବ ।

କାନମୁଣ୍ଡା ଆଉଁଷିବା— ଅନନ୍ୟୋପାୟ ହେବା ।

କାମ ଅଟକିଲେ ବୁଦ୍ଧି ଦିଶେ— ଅଭାବରେ ପଡ଼ି ବାଟ ଖୋଜିବା ।

କଖାରୁ ତୋପି, ବେଳ ଜାଣିକରି ଗଡ଼ିଲେ ଗୋପୀ— ବେଳ ଉଣ୍ଡି ପହଞ୍ଚିବା ।

କରାଳଗା ହେବା— ମୃତ୍ୟୁଶଯ୍ୟାରେ ପଡ଼ିଥିବା ।

କୃଷ୍ଣ ପାଇଁ ସିନା ଦୋଳଯାତରା– ନିର୍ଦ୍ଦିଷ୍ଟ ବ୍ୟକ୍ତିପାଇଁ ବ୍ୟାପକ ଆୟୋଜନ ।

କେଉଁ ପାଣି କେଉଁ ଆଡ଼କୁ ଯାଉଛି– ଅବସ୍ଥାକୁ ଲକ୍ଷ୍ୟ କରିବା ।

କୋଳିଖାଇ କଅଣ ମଞ୍ଜି ପୋତିଛି ?– ସବୁଦିନ ପାଇଁ ଯୋଜନା କରିବା ।

କାକ-ତାଳୀୟ ନ୍ୟାୟ– ସଂଯୋଗ ବଶତଃ କାମ ।

କଅଁଳ ଲୁହାକୁ ବିରାଡ଼ି କାମୁଡ଼େ– ଅତ୍ୟନ୍ତ ନମ୍ର ହେଲେ ଦୁଷ୍ଟ ଲୋକ ଏହାର ସୁଯୋଗ ନିଏ ।

କୀଚକ ବାହୁବଳେ ବିରାଟ ରାଜା– ଜଣକ ଶକ୍ତି ବଳରେ ଅନ୍ୟ ଜଣେ ବଳୀୟାନ୍ ହେବା ।

କେଉଟ ଧରେ ମାଛ, ଖାଏ କଙ୍କଡ଼ା– କୌଣସି ଜିନିଷର ବ୍ୟବସାୟ କରୁଥିବା ଲୋକ ତାହା ଉପଭୋଗ କରିବାକୁ ଚାହେଁନା ।

କାନ୍ଥର ମଧ୍ୟ କାନ ଅଛି– ଯେକୌଣସି ସ୍ଥାନରେ କାନେଇଥିବା ଲୋକ ଥାଇପାରନ୍ତି ।

କୁସୁମ ପରଶେ ପଟ ନିସ୍ତରିବା– ଉତ୍ତମ ସଙ୍ଗ ଯୋଗୁଁ ଉଦ୍ଧାର ପାଇବା ।

କାଉଁରିଆ କାଠି- ଭାଙ୍ଗିଯିବ ପଛେ ନଇଁବ ନାହିଁ– ଦୁର୍ବଳ ହେଲେ ମଧ ନତମସ୍ତକ ହେବ ନାହିଁ ।

କାଇଁଚ ମାଟିରେ ପଡ଼ିଲେ ବି ଜ୍ୟୋତି ହରାଏ ନାହିଁ– ଅଭିଜାତ ବଂଶର ଲୋକ ଦରିଦ୍ର ହେଲେ ମଧ୍ୟ ଆଭିଜାତ୍ୟ ହରାଏ ନାହିଁ ।

କହିବା ବୋଲିବା ଜ୍ଞାନ ନୁହେଁ କି ଆଖି ତରାଟିବା ଧ୍ୟାନ ନୁହେଁ– ବାହ୍ୟରୂପ ଅସଲରୂପ ନୁହେଁ ।

କେଞ୍ଚାଏ ନଇଲେ ମେଞ୍ଚାଏ– ଶେଷରେ ଖାଇବା ଲୋକ ଭାଗ୍ୟରେ ଏହିପରି ଘଟେ ।

କରମ ଗୁଣକୁ କରମଙ୍ଗା ଫଳେ, ନାଉ ନଗେଇଲେ ଚଳଣା ଫଳେ– ଭାଗ୍ୟ ଅନୁସାରେ ଫଳ ।

କର୍ଣ୍ଣ ମଲେ ପାଞ୍ଚ, ଅର୍ଜୁନ ମଲେ ପାଞ୍ଚ– ଯାହା ହେଲେ ବି ସମାନ ଅବସ୍ଥା ।

କଥାର ଲଥା– ଅଦରକାରୀ କଥା ।

କୃପଣକୁ ଲୋଭୀ– ଦୁଇଟି ଖରାପଗୁଣ ଏକାଠି ହେବା ।

କ’ଠାରୁ କ୍ଷ’ଯାଏ– ମୂଳରୁ ଶେଷ ପର୍ଯ୍ୟନ୍ତ ।

କୁହୁଡ଼ି ପହଁରିବା– ମିଥ୍ୟା ଆଶା ପୋଷଣ କରିବା ।

# ଖ

ଖଡ଼ା-ବଡ଼ି-ଥୋଡ଼, ଥୋଡ଼-ବଡ଼ି-ଖଡ଼ା— ଏକାକଥା ଭିନ୍ନ ରୂପରେ ପ୍ରକାଶ ପାଇବା ।

ଖରାଦିନଯାକ ରହିଲି ବସି,
ବରଷା ଦିନରେ ପାରୁଛି ଘସି— ଆଳସ୍ୟର ଦୃଷ୍ଟାନ୍ତ (ଠିକ୍ ସମୟରେ କାମ ନକରିବା)

ଖାଇପିଇ ଯାଉଥିଲି ଶୋଇବାକୁ,
ବିଧାତା କହିଲା ମୂଳା ଚୋରି କରିବାକୁ— ମଣିଷର ଅନିୟନ୍ତ୍ରିତ ମନ କେତେବେଳେ କୁଆଡ଼କୁ ଟାଣି ହୋଇଯାଏ ।

ଖଇ ଖାଇଯିବା— କ୍ଷତି ଘଟିଯିବା ।

ଖାଇଲା ଘର ପୁଅ ଝିଅ ରଙ୍କ— ଯିଏ ଭଲ ଜିନିଷ ଖାଇଆସିଛି ସିଏ ଭଲ ଜିନିଷକୁ ଲୋଭ କରେ ।

ଖଜୁରୀ ଗଛର କି ଗୁଣ ବାହୁନିବି ମୂଳରୁ ପାହାଚ ପାହାଚ— ଦୁଷ୍ଟ ଲୋକର ମନ୍ଦ ଗୁଣର ହିସାବ ସରେନାହିଁ ।

ଖାଲି ମକୁନ୍ଦା ଫେରଫାର, ଦୋପଇସିକୁ ଅଣ୍ଟାରେ ମାର୍— ସମ୍ବଳହୀନ ଲୋକର ବ୍ୟବହାର ।

ଖାଲି କଥାରେ ଚୁଡ଼ା ଭିଜେ ନାହିଁ— କେବଳ କଥା କହିବା ଦ୍ୱାରା କାମ ହୁଏ ନାହିଁ ।

ଖାଇବ ଯା'ର, ଗୁଣ ଗାଇବ ତା'ର— କୃତଜ୍ଞତା ପ୍ରକାଶ କରିବା ମଣିଷର ଧର୍ମ ।

ଖତ ଗଦାରେ ପଦ୍ମ— ସାଧାରଣ କ୍ଷେତ୍ରରେ ଅସାଧାରଣ ପ୍ରତିଭା ।

ଖଡ୍ଗହସ୍ତ— କ୍ରୋଧାନ୍ୱିତ ।

ଖାଆ ଭୁଞ୍ଜ୍ ଗିଳ୍— ଅନୁରୋଧ କରି, ଆଦର କରି ଏବଂ ରାଗିକରି କଥା କୁହାଯାଇପାରେ ।

ଖଣ୍ଡା ଧାରରେ ଚାଲିବା— ଅତ୍ୟନ୍ତ ସାବଧାନ ରହିବା ।

ଖାଲି ମାଠିଆର ଆବାଜ୍ ବେଶୀ– ନଥିବା ଲୋକ ଧନର ବାହାଦୁରି କରିବା ।

ଖୁରି ଖାଇବା– ଅନ୍ୟକୁ କ୍ରୋଧାନ୍ୱିତ କରି ନିଜପାଇଁ ବିପଦ ଆମନ୍ତ୍ରଣ କରିବା ।

# ଗ

ଗଛର ଛାଇ, ମଣିଷ ହାଇ– ଏଥିରେ  କିଛି ଉଧାଏ ନାହିଁ ।

ଗତସ୍ୟ ଶୋଚନା ନାସ୍ତି– ଘଟିଯାଇଥିବା କଥାକୁ ଭାଳି ହେବା ଉଚିତ ନୁହେଁ ।

ଗଲାଣି ତ ଗଲା କଥାରେ ସଙ୍ଗାତ– ଅତୀତକୁ ଭୁଲିଯିବା ।

ଗୋଠ ମାତିଲେ ଖଣ୍ଡିଆ ମାତେ– ଦଳ ଭିତରେ ଥିଲେ ଅନ୍ୟସହିତ ତାଳ ଦେଇ ନାଚିବାକୁ ପଡ଼େ ।

ଗହମ ଗୋଟି ଗଣତା, ରୋଟି ଚୋରାଇବ କିଏ ?– ଅଳ୍ପସଂଖ୍ୟକ ଜିନିଷ ଗଣାହୋଇ ରହିଥିଲେ ଚୋରି ହେବା ଧରାପଡ଼ିଯାଏ ।

ଗୋଠ ଖଣ୍ଡିଆ– ଦଳର ଶୃଙ୍ଖଳା ମାନି ଚଳି ନ ପାରିବା ବ୍ୟକ୍ତି ।

ଗାଁରେ ହାଟ ବସିଛି– ପ୍ରଚାର ହେଉଛି ।

ଗାଛମେ କାଠାଲ୍ ଓଠ୍‌ମେ ତେଲ– ଅନିଶ୍ଚିତ ଦ୍ରବ୍ୟପାଇଁ ପ୍ରସ୍ତୁତି ।

ଗୋଡ଼େଇଥିବ ଧରିବ ନାହିଁ, ଉଁଚେଇଥିବ ମାରିବ ନାହିଁ – କେବଳ ଧମକ ଦ୍ୱାରା ଅନେକ ସମୟରେ କାର୍ଯ୍ୟ ହାସଲ ହୁଏ ।

ଗରିବ ମାଇପ ସଭିଙ୍କ ଶାଳୀ– ଗରିବ ଲୋକ ସାମାଜିକ.ସମ୍ମାନ ପାଏ ନାହିଁ ବା ଦାରିଦ୍ର୍ୟ ଉପହାସର କାରଣ ।

ଗୁଣ ଚିହ୍ନେ ଗୁଣିଆ, ସୁନା ଚିହ୍ନେ ବଣିଆ– ଗୁଣୀ ଲୋକ ଗୁଣର ଆଦର କରେ ।

ଗୋଦରା କୋଡ଼େ ଯେତେ, ମାଡ଼େ ସେତେ– କିଛି କାମ କଲାବେଳେ ଅନ୍ୟ ସମସ୍ୟା ସୃଷ୍ଟି କରିବା ।

ଗୋଦରୀ ଲୋ ନିଜ ଗୋଡ଼କୁ ଅନା– ଅନ୍ୟର ଦୋଷ ଦେଖାଇବାକୁ ଯିବାବେଳେ ନିଜର ଦୋଷ ଦେଖିବା ଉଚିତ ।

ଗୁଡ଼ ଅନ୍ଧାରରେ ଖାଇଲେ ଯେଉଁ ମିଠା, ଆଲୁଅରେ ଖାଇଲେ ସେହି ମିଠା– ଦ୍ରବ୍ୟର ଗୁଣ ଓ ମନୁଷ୍ୟର ସ୍ୱଭାବ ଆଲୁଅ-ଅନ୍ଧକାରରେ ବଦଳିଯାଏ  ନାହିଁ ।

ଗରଜିଲା ମେଘ ବରଷେ ନାହିଁ– ପାଟିତୁଣ୍ଡ କରିବା ଲୋକଦ୍ୱାରା କାମ ହୁଏନାହିଁ ।

ଗୋଟିଏ ହାତରେ ତାଳି ବାଜେନାହିଁ– ଦୁଇଲୋକ ଇଚ୍ଛାକଲେ କଳିଲାଗେ ।

ଗୋଟିଏ ଚାଉଳରେ ଗଢ଼ା– ଦେଖିବାକୁ ଭାରି ସୁନ୍ଦର ।

ଗୋରୁ ମୁଣ୍ଡ ଥାପି କପା ତୋଳିବା– ଅନ୍ୟକୁ ଦ୍ୱାହିଦେଇ କାମ ହାସଲ କରିବା ।

ଗଉଡ଼ର ଗୁହାଳ ଧୋଇ, ମୋଚିର ବାହାଘର– ଜଣକର କ୍ଷତିରେ ଅନ୍ୟର ଲାଭ ।

ଗୁଳୁରାଣ ମେଣ୍ଟାଇବା– କୌଣସିମତେ ଘର ସଂସାରକୁ ଅଭାବ ଭିତରେ ଚଳାଇନେଉଥିବା ।

ଗାଈ ମାଇଲେ ମଲି, ଗାଈକୁ ମାଇଲେ ମଲି– ଉଭୟ କାର୍ଯ୍ୟ ମଧ୍ୟରୁ ଯେକୌଣସିଟି କରିବା ବିପଦ ।

ଗଣକ, ଗଣିକା, ବୈଦ୍ୟ....ସ୍ୱଜାତି ପରହିଂସ୍ରକ– ଜ୍ୟୋତିଷୀ, ବେଶ୍ୟା, ଡାକ୍ତର, କୁକୁର ଇତ୍ୟାଦି ନିଜ ଜାତିକୁ ହିଂସା କରନ୍ତି ।

ଗାଲୁଆର ବାରବାଟି ଚାଷ– ମିଥ୍ୟାବାଦୀର ଅତିରଞ୍ଜିତ କଥା ।

ଗରଜ ପଡ଼ିଲେ ଗଧ ପାଦ ଧରିବାକୁ ହୁଏ– ଆବଶ୍ୟକ ସ୍ଥଳେ ନୀଚ ବ୍ୟକ୍ତିର ସାହାଯ୍ୟ ଲୋଡ଼ିବା ।

ଗାଆଁ କନିଆ ସିଙ୍ଘାଣିନାକୀ– ଘର ପାଖରେ ଚଳିଆସୁଥିବା ଝିଅର ଅବଗୁଣଟା ଆଖିରେ ପଡ଼େ ।

ଗୋବର ପୋଛିବାକୁ ନକହି ଝାଡୁ-ଟୋକେଇ ଦେବା– ସିଧା କଥା ନକହି ପ୍ରକାରାନ୍ତରେ କହିବା ।

ଗାଲ ଚିପି ଦେଲେ ଦୁଧ ବାହାରି ପଡ଼ିବ–ଅର୍ବାଚୀନ, ଅନଭିଜ୍ଞ ।

ଗଙ୍ଗା କହିଲେ ଥିବି, ଗାଙ୍ଗୀ କହିଲେ ଯିବି– କଥା ମାନୁଥିବାଯାଏ ଆଦର ପାଇବା ।

ଗାଆଁ ପରିମଳ ଧୋବା ତୁଠରୁ, ବନ୍ଧୁ ବ୍ୟବହାର ଅଧା ବାଟରୁ– ଗ୍ରାମବାସୀଙ୍କ ପରିଚ୍ଛନ୍ନତା ଧୋବାକୁ ଦିଆଯାଇଥିବା ଲୁଗାପଟାରୁ ଜଣାପଡ଼ିଯାଏ । ବନ୍ଧୁର ଆଦର ଯତ୍ନ ଦେଖାହେବା ମାତ୍ରେ ଜଣାପଡ଼ିଯାଏ ।

ଗୋରୁ ମାରି ଜୋତା ଦାନ– ବୃହତ୍ ପାପ କରି କ୍ଷୁଦ୍ର ପ୍ରାୟଶ୍ଚିତ୍ତ କରିବାର ଅପଚେଷ୍ଟା ।

ଗୋଟାଏ ଗୁଳିରେ ଦୁଇପକ୍ଷୀ ଶିକାର କରିବା– ଏକାଥରକେ ଦୁଇଟି କାମହାସଲ ।

ଗାଈ ନୁହେଁ କି ମାଈ ନୁହେଁ– ଅପଦାର୍ଥ

ଗାଆଣୀ ଗାଇଲେ ସରିବ ନାହିଁ– ଦୁଃଖ କଷ୍ଟର ସୀମା ରହିବ ନାହିଁ ।

ଗବ ଡିମିରିର ଘର– କ୍ଷଣସ୍ଥାୟୀ ।

ଗେରୁଆ ବସ୍ତ୍ର ସନ୍ୟାସୀର ଚିହ୍ନ ନୁହେଁ– ବେଶ ପୋଷାକରୁ ଗୁଣ ଜଣାପଡ଼େନା ।

## ଘ

ଘଣ୍ଟ ଘୋଡ଼େଇବା– ଦୋଷ ଘୋଡ଼େଇବା ।

ଘୋଡ଼ା ଛ'ଟଙ୍କାକୁ ଦାନା ନଅ ଟଙ୍କା– ଅଳ୍ପ ମୂଲ୍ୟରେ କିଣିଥିବା ପଦାର୍ଥ ବା ଜନ୍ତୁ ପାଇଁ ଅଧିକ ଖର୍ଚ୍ଚାନ୍ତ ହେବା ।

ଘର ପଛେ ପୋଡୁ, ମୂଷା କେଞ୍ଚେ ପାଉ– ସାମାନ୍ୟ କଥାରେ କ୍ରୋଧାନ୍ୱିତ ହୋଇ ନିଜର ସର୍ବନାଶ ଘଟାଇବା ।

ଘଇତା ପଛେ ମରୁ ସଉତୁଣୀ ରାଣ୍ଡ ହେଉ– ଅନ୍ୟପ୍ରତି ଈର୍ଷାରେ ନିଜର ସର୍ବନାଶ ଡାକି ଆଣିବା ।

ଘର ବୁଡ଼ି ପାଣି ଆଣ୍ଠିଏ ହେଲାଣି, କଣା କହୁଛି ମେଘ ଦୁଲୁକୁଛି– ନିର୍ବୋଧ ଲୋକ ନିଜ ମୁଣ୍ଡ ଉପରେ ଥିବା ବିପଦକୁ କଳି ପାରେନା ।

ଘୁଷୁରିକୁ ପାଚିଲା କଦଳୀ ଭଲ ଲାଗିବ କୁଆଡୁ ?– ମନ୍ଦ ପ୍ରକୃତିର ଲୋକକୁ ହିତ କଥା ଭଲ ଲାଗେ ନା ।

ଘୋଡ଼ା ଚଢ଼ାରୁ ସଂପଦ ନାହିଁ କି ଘର ପୋଡ଼ିରୁ ବିପତ୍ତି ନାହିଁ–ଧନବାନ୍ ଲୋକ ଘୋଡ଼ା ଚଢ଼େ, ଘରପୋଡ଼ିରେ ମନୁଷ୍ୟ ସର୍ବସ୍ୱାନ୍ତ ହୋଇଯାଏ ।

ଘରପୋଡ଼ିରୁ କୁଟାଖିଏ ମିଳିଲେ ମଧ୍ୟ ରକ୍ଷା– ବଡ଼ ବିପଦରେ ସାମାନ୍ୟ ପଦାର୍ଥ ମଧ୍ୟ ସାହାଯ୍ୟ କରେ ।

ଘିଅ ମହୁରେ ଭାସିବା– ବହୁ ସଂପଦର ଅଧିକାରୀ ହେବା ।

ଘଷର ଘଷର ଆହୁରି ଘଷର-ଘଷର ଘଷର ପାଣି,

ତୁ ଯହିଁପାଇଁ ନସର ପସର ମୁଁ ସେ କଥାଟି ଜାଣି ।– ଆସିଥିବା ଲୋକର ଉଦ୍ଦେଶ୍ୟ ବୁଝିପାରିବା ।

ଘରେ ନ ପଶୁଣୁ ଚାଳ ବାଡ଼ିବା– ଆରମ୍ଭରୁ ଦୋଷ କରିବା ।

ଘର ନିଆଁ ଅଣ୍ଟିରେ ପୂରେଇବା– ନିଜ ଲୋକର ଦୋଷ ଘୋଡ଼େଇବାକୁ ଚେଷ୍ଟା କଲେ ସେଥିରେ ନିଜର କ୍ଷତି ହୁଏ ।

ଘର ଭେଦୀ ବିଭୀଷଣ– ନିଜ ଘର କଥା ବାହାରେ ପ୍ରକାଶ କରୁଥିବା ଲୋକ ।

ଘର ଢ଼ିଙ୍କି କୁମ୍ଭୀର– ନିଜ ଘର ଲୋକ ଶତ୍ରୁ ପାଲଟିବା ।
ଘାସକୁ ଲମ୍ବ ପାଳକୁ ଛୋଟ– ନିମ୍ନ ମଧ୍ୟବିତ୍ତ ।
ଘରେ ହାଣ୍ଡି ମାଙ୍କଡ଼ଚିତ୍ ମାରିବା– ଅଭାବ ଯୋଗୁଁ ରୋଷେଇ ହୋଇ ପାରୁ ନଥିବା ।
ଘରେ ବାଇଆ ଚଢ଼େଇ ବସା, ଦାଣ୍ଡକୁ ବଳରାମ ପୁରି ଖୋସା– ଗରିବ ଲୋକର
ବାହାରକୁ ଆଡ଼ମ୍ବର ଦେଖାଇହେବା ।
ଘଡ଼ିକେ ଘୋଡ଼ା ଛୁଟିଯାଏ– ମୁହୂର୍ତ୍ତକ ମଧ୍ୟରେ ଅବସ୍ଥା ବଦଳିଯାଏ ।
ଘୋଡ଼ା ଡିମ୍ବ– ଅର୍ଥହୀନ ଅସମ୍ଭବ କଥା ।
ଘରେ କଳାକନା ବୁଲାଇବା– ଘରୁ ସବୁ ନେଇଯିବା ।
ଘୋଡ଼ା ବେପାର କରିବା– ଅନ୍ୟାୟ କାର୍ଯ୍ୟପାଇଁ ଲାଞ୍ଚ ଦେବା ।
ଘଟ ଛୁଟିବା– ମୃତ୍ୟୁ ଘଟିବା ।
ଘୋଡ଼ା ଦଉଡ଼ି ଦଉଡ଼ି ଯେଉଁଠି, ହାତୀ ନହସି ନହସି ସେଇଠି– କେବଳ ତରତର
ନୁହେଁ, ଧୀରତା ମଧ କାର୍ଯ୍ୟ ସାଧନ କରେ ।

## ଚ

ଚକେ ଗଲେ ବାରହାତ– ସମୟର ବ୍ୟବଧାନ ପରିବର୍ତ୍ତନ ଆଣିଥାଏ କିମ୍ବା ସୁଯୋଗ
ଥରେ ଗଲେ ପୁଣି ଆସିବା କଷ୍ଟ ।
ଚିତା କାଟିବା– ଠକିବା ।
ଚୋରର ମୁହଁ ଟାଣ– ନିଜର ଅପକର୍ମ ଘୋଡ଼େଇବାକୁ ଦୃଢ଼ଭାବ ଦେଖାଇବା ।
ଚାରି ଦଉଡ଼ି କଟା– ସବୁ ସ୍ନେହ ବନ୍ଧନରୁ ମୁକ୍ତ ଶାସନର ବହିର୍ଭୂତ ।
ଚଳାପଥରେ ପୁଷ୍ପ ବୃଷ୍ଟି ହେଉ– ଶୁଭ କାମନା କରିବା ।
ଚନ୍ଦ୍ର ବାଙ୍କ ଦିନେ ଦିନେ, ମୂର୍ଖ ବାଙ୍କ ସଦାଦିନେ– ମୂର୍ଖଙ୍କ ସ୍ୱଭାବ ସହଜରେ ବଦଳେ
ନାହିଁ ।
ଚେଇଁ ଶୋଇବ ଯିଏ, ତାକୁ ଉଠେଇବ କିଏ ?– ଜାଣିଶୁଣି କୌଣସି କାର୍ଯ୍ୟ କରୁଥିବା
ଲୋକକୁ ସେଥିରୁ ନିବୃତ୍ତ କରିବା କଠିନ ।
ଚରଣ ଚୁଟିଆ ନୀତି– କେତେବେଳେ ଗୋଡ଼ ଧରିବା, ଆଉ କେତେବେଳେ ଚୁଟି
ଧରିବା ଆଦର୍ଶହୀନ ଲୋକର ବ୍ୟବହାର ।
ଚାଷ ତରତର ବଣିଜ ମଠ– ଉପଯୁକ୍ତ ସମୟ ଦେଖି ତତ୍ପରତାର ସହିତ ଚାଷ କଲେ
ଏବଂ ସହିସମ୍ଭାଳି ବ୍ୟବସାୟ କଲେ ଲାଭ ମିଳିଥାଏ ।

ଚିଙ୍ଗୁଡ଼ି ଚିପିଲେ ମୁଣ୍ଡରେ ଘୁଅ–କ୍ଷୁଦ୍ର ଜୀବକୁ ମାରିଲେ ନିନ୍ଦା ମିଳିଥାଏ ।

ଚୁଚୁନ୍ଦ୍ରା ମାଇଲେ ହାତ ଗନ୍ଧାଏ– ନିରୀହ ଜନ୍ତୁକୁ ମାରିଲେ ନିନ୍ଦା ମିଳିଥାଏ ।

ଚକୁଳି ନଖାଇ ବିନ୍ଧ ଗଣିବା– ଯେଉଁ କାର୍ଯ୍ୟ କରିବାକୁ ଦିଆଯାଉଛି ତାହା ନକରି ସେ ସଂପର୍କରେ ଉଦ୍‌ଭଟ ଚିନ୍ତା କରିବା ।

ଚମୈଇ ନେଉଳର ଆଗାମୀ କାଲି– କୌଣସି କାର୍ଯ୍ୟ ଆଜି ନ କରି ଆସନ୍ତାକାଲିକୁ ରଖିଦେଲେ କାର୍ଯ୍ୟଟି ନହୋଇପାରିବା ସମ୍ଭାବନା ।

ଚାଲୁଣି କହେ ଛୁଞ୍ଚିକୁ– ବହୁ ଦୁର୍ଗୁଣର ଅଧିକାରୀ ଅଳ୍ପ ଦୁର୍ଗୁଣ ଥିବା ଲୋକକୁ ସମାଲୋଚନା କରିବା ।

ଚାଲିଗଲା ଶଗଡ଼ରେ ହାତ ଦେବା– ବଡ଼ ଦୁଷ୍ଟ ପଣିଆ ।

ଚାଟଘର ପୁଅ ଚାଟ– ପରବର୍ତ୍ତୀ ବଂଶଧର ଉପରେ ପୂର୍ବପୁରୁଷଙ୍କ ପ୍ରଭାବ ଥାଏ ।

ଚୋର ମାଆ କାନ୍ଦେନା– ଚୋରକୁ ଦଣ୍ଡ ଦିଆଯାଉଥିବା ବେଳେ ତା'ର ନିଜର ଲୋକ ସହାନୁଭୂତି ଦେଖାଇ ପାରନ୍ତି ନାହିଁ ।

ଚୁଲ୍ଲୀ ନ ଜଳିବା– ଅଭାବଯୋଗୁଁ ରୋଷେଇ ନହେବା ।

ଚୋରି ଉପରେ ସିନାଜୋରି– ଚୋରି କରିଥିବା ଲୋକ ଅପର ଲୋକକୁ ଧମକାଇବା ।

ଚୌର ନିନ୍ଦନ୍ତି ଚନ୍ଦ୍ରମା– ଜହ୍ନ ରାତିରେ ଚୋରି କରିବା ସୁବିଧା ହୁଏ ନାହିଁ ବୋଲି ଚୋରମାନେ ଚନ୍ଦ୍ରର ନିନ୍ଦା କରନ୍ତି ।

ଚାଲି ନଜାଣି ବାଟର ଦୋଷ– ନିଜର ଅକ୍ଷମତା ପାଇଁ ଅନ୍ୟକୁ ଦୋଷ ଦେବା ।

ଚିହ୍ନା ବ୍ରାହ୍ମଣର ପଇତା ଦେଖିବା ଦରକାର ହୁଏନାହିଁ– ପରିଚିତ ବ୍ୟକ୍ତିର ପରିଚୟ ଅନାବଶ୍ୟକ ।

ଚାହିଁ ଜଳକା– ଦେଖୁ ଦେଖୁ ଠକିଯିବା ।

ଚୋର ଗଲେ ବୁଦ୍ଧି ଦିଶେ– କାମ ସରିବା ପରେ ନୂଆ କୌଶଳ ମୁଣ୍ଡକୁ ଜୁଟିବା ।

ଚୋର ମନ ଚୋର ଗଣ୍ଠିରେ– ସନ୍ଦେହୀ ମନ ସର୍ବଦା ସନ୍ଦେହ ଭିତରେ ବା ମନ୍ଦଚିନ୍ତାରେ ଲିପ୍ତ ରହିବା ।

ଚକ୍ଷୁ କୁଟିବା– ଅକାରଣରେ ପରିଶ୍ରମ କରିବା ।

ଚକ୍‌ଚକ୍ ଦିଶୁଥିବା ସବୁ ଜିନିଷ ସୁନା ନୁହେଁ– ଚେହେରା ବ୍ୟକ୍ତିତ୍ୱର ମାପକାଠି ନୁହେଁ ।

ଚୁଲ୍ଲୀ-ଚାଳ ନଥିବା– ଘୋର ଦାରିଦ୍ର୍ୟ ।

ଚୁଲ୍ଲୀରେ ହଗିବା– ମନ୍ଦ କାର୍ଯ୍ୟ କରିବା ।

ଚିତା ଚିନ୍ତା ଦ୍ୱୟର୍ମଧ୍ୟେ ଚିନ୍ତା ଏବ ଗରୀୟସୀ,
ଚିତା ଦହତି ନିର୍ଜ୍ଜୀବଂ, ଚିନ୍ତା ଦହତି ସଜ୍ଜୀବଂ ।
ଚା' କପ୍‌ରେ ଝଡ଼– ସାମାନ୍ୟ କଥାରେ ତୁମୁଳ କାଣ୍ଡ ।
ଚୂନ କାଳି ଲଗାଇବା– ନିନ୍ଦିତ କରିବା ।
ଚତୁରେ ଚତୁରେ କୋଳାକୋଳି– ସମଧର୍ମା ଲୋକମାନେ ଗୋଟିଏ ଯୋଜନା କରିବା ।

## ଛ

ଛଙ୍ଗିଁଲେ ଛଅ ଘାଆ– ସାମାନ୍ୟ ଆଘାତ ମଧ୍ୟ ସହି ନପାରିବା ।
ଛେନାରୁ ଚୋପା ଛଡ଼ାଇବା– ଅତି ବେଶୀ ପରୀକ୍ଷା-ନିରୀକ୍ଷା କରିବା ।
ଛାମୁ ଯାହା ଦେଲେ ହରଷେ- ପାଉ ପାଉ ଗଲା ବରଷେ,
ଏମନ୍ତ ଭୂଇଁ, ଚାକୁଣ୍ଡା ବୁଣିଲେ ଉଠଇ ନାହିଁ । (କବି ଯଦୁମଣି) ସରକାରୀ କଳରେ ତତ୍ପରତାର ଅଭାବ ଏବଂ ନିକୃଷ୍ଟ ଦାନକୁ ଲକ୍ଷ୍ୟ କରି ତାଚ୍ଛଲ୍ୟ ।
ଛତୁ ଫୁଟିଲା ପରି– ବେଶୀ ପରିମାଣରେ କିଛି ଦେଖାଯିବା ।
ଛତୁ ଫୁଟା କାଠ, ନିଶ ଉଠା ପାଠ– ଅଦରକାରୀ କାଠ ଦେହରେ ଛତୁ ଦେଖାଗଲେ ତାହା ଦୁର୍ବଳ ବୋଲି ଜାଣିବ, ନିଶ ଉଠିଥିବା ଯୁବକ ପାଠ ପଢ଼ିବାକୁ ଆରମ୍ଭ କରିବା ଫଳପ୍ରଦ ହୁଏ ନାହିଁ ।
ଛାଗଳର ଗଳସ୍ତନ– କିଛି କାମରେ ଆସୁ ନଥିବା ଅନାବଶ୍ୟକ ବୋଝ ।
ଛିଲୋ ଛତୁ, ମେଘ ବରଷିଲେ କେତେ ତୁ ମାତୁ– ବର୍ଷାର ଆରମ୍ଭରେ ଛତୁ ଦେଖା ଦେବା ଭଳି କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତିର ଆଗମନରେ କେହି କେହି ଭାରସାମ୍ୟ ହରାଇ ବସନ୍ତି ।
ଛାତିକୁ ଲଙ୍ଗଳ ଦଉଡ଼ି ନ ପାଇବା– ଗର୍ବ ଓ ଅହଂକାରରେ କାହାକୁ ଖାତର ନ କରିବା ।
ଛେପ ପକାଇ ନିଜେ ଚାଟିବା– ପ୍ରତିଶ୍ରୁତି ଭଙ୍ଗ କରିବା ।
ଛୋଟୀକୁ ଶ୍ରୀମତୀ କହିଲେ ସିଏ ପାଦ ବୁଲେଇ କରି ପକାଏ– ପ୍ରଶଂସା ପାଇବାର ଯୋଗ୍ୟତା ନଥିବା ବ୍ୟକ୍ତିକୁ ପ୍ରଶଂସା କଲେ ସିଏ ଗର୍ବରେ ଫୁଲିଯାଏ ।
ଛଅ ତିଅଣ ନଅ ଭଜା– ପ୍ରାଚୁର୍ଯ୍ୟର ପ୍ରତୀକ ।
ଛେଳି ନ ବେଉଣୁ ବୋଦା କାଢ଼ିଆ– କୌଣସି ଆୟର ସଂଭାବନାରେ କରଜ କରିବା ।

## ଜ

ଜାଣି ଚତୁରୀ– ଛଳନାକାରୀ ।
ଜହ୍ନିମଞ୍ଜିଠାରୁ ତୋରା– ତ୍ରିପଣ୍ଡ କାଳିଆ ।
ଜାତକ ଉଇ ଖାଇବା– ମୃତ୍ୟୁ ନିକଟ ହେବା ।
ଜିଭ ଅଗରେ ଥିବା କଥା– ମୁଖସ୍ଥ ଥିବା କଥା, ବେଳେବେଳେ ମନେ ନ ପଡ଼ିବା ।
ଜାତି ପାଖରେ ହାତୀ ଯାଇପାରେନାହିଁ– ସମାଜ ନିକଟରେ ଧନାଢ଼୍ୟ ବ୍ୟକ୍ତି ମଧ୍ୟ ନତମସ୍ତକ ହୁଏ ।
ଜଡ଼ାତେଲ ମେଣ୍ଢାବାଳ– ଅତ୍ୟନ୍ତ ଘନିଷ୍ଠତା ।
ଜଳ ବିହୁନେ ସୃଷ୍ଟିନାଶ, ଜଳଗହଳେ ସୃଷ୍ଟି ନାଶ– ଅତି ଅଳ୍ପ ଓ ଅତି ବେଶୀ ଉଭୟେ କ୍ଷତିକାରକ ।
ଜୋର ଯା'ର ମୁଲକ ତା'ର– ଶାରୀରିକ ବଳଦ୍ୱାରା ସମସ୍ତଙ୍କୁ ଜବତ୍ କରିବା ।
ଜୋକ ମୁହଁରେ ଲୁଣ– କୌଣସି ଲୋକକୁ ତାର ଦୁର୍ବଳତା ଦର୍ଶାଇ ଚୁପ୍ କରିଦେବା ।
ଜୀରାରୁ ଶିରା ବାହାର କରିବା– ସବୁ କଥାରେ ଭୁଲ ବାଛିବା ।
ଜାଉ ପାଖେଇ ପାଖେଇ ଖାଇବ– ସବୁକାମ ମୂଳରୁ ଆରମ୍ଭ କରିବା ।

## ଝ

ଝିଣ୍ଟିକା ମାରି ବଣି ପୋଷିବା– ଗରିବଙ୍କ ତଣ୍ଟି ଚିପି ଜଣ ଜଣକୁ ଖୁସି କରିବା ।
ଝିମିଟି ଖେଳରୁ ମହାଭାରତ– ସାମାନ୍ୟ କଥାରୁ ବିରାଟ ସମସ୍ୟା ଉପୁଜିବା ।
ଝାଳବୁହା ଧନ– ବହୁ ପରିଶ୍ରମ ଦ୍ୱାରା ଅର୍ଜିତ ଧନ ।
ଝିଅ ଜନମ ପରଘରକୁ– ଝିଅମାନେ ଅନ୍ୟଘର ପାଇଁ ପାଳିତ ହୁଅନ୍ତି ।
ଝିଅ, ଘିଅ- ବେଶୀ ବରଷ ହେଲେ ଗନ୍ଧାଏ– ଝିଅ ବହୁ ଦିନ ଅବିବାହିତା ରହିଲେ ବଦନାମ୍ ହୁଏ ।

## ଟ

ଟିପ ଟାଣୁଆ ଲୋକ– ଧନୀ ଲୋକ । ଦୃଢ଼ମନା ଲୋକ ।

ଟେକାଟିଏ ପକାଇଲେ ବୋଲୁଅଟିଏ ଥୁଆ– ଯାହାଦେବ ତାଠୁ ବେଶୀ ପାଇବ ଭଲ ହେଉ ବା ମନ୍ଦ ହେଉ ।

ଟିଙ୍କ ପରିଲାଗି ରହିବା– ପାଖ ନଛାଡ଼ିବା ।

ଟାଙ୍କେ ଛେଚିବା– ବହୁତ ମାଡ଼ ଦେବା ।

## ଠ

ଠାକୁର ଘରେ କିଏ-ନା-ମୁଁ କଦଳୀ ଖାଇ ନାହିଁ– ଦୋଷ କରିଥିବା ଲୋକ ଅଜାଣତରେ ଦୋଷ ସ୍ୱୀକାର କରିଯାଏ ।

ଠାକୁର ଦେଖା, କଦଳୀ ବିକା– ଏକାବେଳକେ ଦୁଇଟି କାମ କରିବା ।

ଠିକିଲେ ଶିଖନ୍ତି– ଭୁଲ କରିଥିଲେ ସେଥିରୁ ଶିକ୍ଷା ମିଳେ ।

ଠାପୁଆଙ୍କ ଗୁରୁ– ମହା ଅଳସୁଆ ।

ଠ-ଠା-ଠି– ବିଫଳ ହେବା ।

ଠେଲ୍ ଗୋପାଳ– ଟିକିଏ ଖଟା ଜିନିଷ ହେଲେ ଦି'ଗଣ୍ଡା ବେଶୀ ଖାଇ ହୁଏ ।

ଠେଙ୍ଗଣି ପୂଜା– ମାଡ଼ ଦେବା ।

ଠନ୍ ଠନ୍ ମଦନ ଗୋପାଳ– ନଗଦ ଅର୍ଥ ।

ଠିଆ ମରିବା– ସମୟ ନଦେଇ ଦମନ କରିବା ।

ଠାକୁର ଖାଇ ଖଟୁଳି ଖାଇବା– ସୁଧ ମୂଳ ଗର୍ଭସାତ କରିବା ।

## ଡ

ଡାମଣ ଅଗରେ ଘିଅ ଖାଇବା– ପୂର୍ବର ସୁଖ ସମୟକୁ ବସି ଝୁରିହେବା ।

ଡମ୍ବରୁ କହୁଛି-ତହୁଁ ବଡ଼, ତହୁଁ ବଡ଼– ଦୁନିଆରେ କେହି କହିପାରିବ ନାହିଁ ସିଏ ବଡ଼ । କାରଣ ତା' ଠାରୁ ବଡ଼ ମଧ୍ୟ ଅଛନ୍ତି ।

ଡାଆଣୀ ହୋଇ ଲାଗିବା, ଗୁଣିଆ ହୋଇ ଝାଡ଼ିବା– ଏକାବ୍ୟକ୍ତି ଦୁଇ ପ୍ରକାରର ଅଭିନୟରେ ଅବତୀର୍ଣ୍ଣ ହେବା ।

ଡେଙ୍ଗା ମୁଣ୍ଡରେ ଠେଙ୍ଗା– ପିଲାମାନଙ୍କର ଦୋଷ ମୁରବୀ ଉପରକୁ ଆସିଥାଏ ।

ଡର କାହାକୁ ଭୟ କାହାକୁ, ଠାକୁର ଅଛନ୍ତି ଚଉବାହାକୁ– ଭଗବତ୍ ବିଶ୍ୱାସ ହୃଦୟରେ ବ ଳ ଦିଏ,ନିର୍ଭୀକ କରେ ।

ଡାଲୁଅ ଯୋଗେ କନ୍‌ସିରି ପାଣି ପାଇବା– ଜଣକ ପାଇଁ ଅନ୍ୟ ଜଣେ ଉପକୃତ ହେବା ।

ଡିଣ୍ଡିମ ପିଟିବା– ଚାରିଆଡ଼େ ପ୍ରଚାର କରିବା ।

ଡହ ଡହ ଆମ୍ବିଳ, ଶୀତଳ ଭଜା– ଗରମ ଖଟା ଓ ଥଣ୍ଡାଭଜା ଅସ୍ୱାଦ ।

ଡିମ୍ବ ଡିଅଣ କଅଣ ଆଇଁଷରେ ଲେଖା ?– ଅଣ୍ଡାକୁ ନିରାମିଷ ପଦ ନଦେବା ।

## ଢ

ଢୋଲ ଭିତରେ ମୂଷା– ଆପଣା ଶିବିରରେ ଶତ୍ରୁର ଚର ।

ଢୋକେ ପିଇ ଦଣ୍ଡେ ଜୀଇ– ଅଳ୍ପ ଉପାର୍ଜନରେ କୌଣସିମତେ ବଞ୍ଚିରହିବା ।

ଢୋଲ ଖାଏ ମାଡ଼, ପାଣ ଖାଏ କଉଡ଼ି– ଜଣେ କଷ୍ଟ ସହେ, ଅନ୍ୟଜଣେ ଫାଇଦା ନିଏ ।

ଢିଙ୍କି ସ୍ୱର୍ଗକୁ ଗଲେ ବି ଧାନ କୁଟିବ– ଯିଏ ଯେଉଁ କାମ କରିବାରେ ଅଭ୍ୟସ୍ତ ସିଏ ଯେଉଁଠାକୁ ଯାଉ ସେହିକାମ କରିବ ।

ଢମ ଦେଖେଇ ହେବା– ବଡ଼ ପଣିଆ ଦେଖେଇହେବା ।

ଢକା ବାଜିବା– ଚାରିଆଡ଼େ ପ୍ରଚାରିତ ହେବା ।

## ତ

ତେଲି ତେଲ ମିଶି ଯାଆନ୍ତି, ପିଡ଼ିଆ ଅଲଗା ହୋଇଯାଏ– ଗୁଣୀ ଗୁଣକୁ ଗ୍ରହଣ କରି ଦୋଷକୁ ତ୍ୟାଗ କରିବା ।

ତିନି ଶେଣାରେ ପାଣି ଉଠେଇବା– ଗୋଟିଏ କାର୍ଯ୍ୟକୁ ଏକା ନକରି ଅନ୍ୟର ସାହାଯ୍ୟ ନେବା ।

ତିଳକୁ ତାଳ କରିବା– ଛୋଟ କଥାକୁ ବଡ଼ କରି ଦେଖେଇବା ।

ତୁଣ୍ଡ ବାଇଦ ସହସ୍ର କୋଶ– ତୁଣ୍ଡରୁ ବାହାରିବା କଥା ବହୁଦୂରକୁ ପ୍ରଚାର ହୋଇଯାଏ ।

ତାଳୁ ଝାଳ ତଳିପାରେ ମରିବା– କଠିନ ପରିଶ୍ରମ କରିବା ।

ତୁଛାକୁ ଏତେ, ମୁଦି ନାହିଁ ଗୋଡ଼ କଟାଡୁ କେତେ

ପିତଳ ଗୁଣାକୁ ନାକ ଟାଉଁ ଟାଉଁ, ସୁନା ଗୁଣା ଥିଲେ ହୁଅନ୍ତୁ କେତେ– ଅଳପ ଧନର ଅଧିକାରୀ ଅହଙ୍କାର କରୁଥିଲେ, ବେଶୀ ଧନର ଅଧିକାରୀ ହେବାବେଳର ଅବସ୍ଥା କଳ୍ପନାତୀତ ।

ତୁଳସୀ ଦୁଇପତ୍ରରୁ ବାସେ– ପିଲାଦିନରୁ ବଡ଼ ହେବାର ସୂଚନା ମିଳିବା ।

ତିନି ତୁଣ୍ଡରେ ଛେଳି କୁକୁର– ମିଥ୍ୟାକଥା ବାରମ୍ବାର କହି ଠକିବାକୁ ଚେଷ୍ଟା କରିବା ।

ତତଲା ପାଣିରେ କଅଣ ଘର ପୋଡ଼ିଯାଏ ? କେହି ଗାଳି ଦେଲେ କଅଣ ଦେହ ଖଣ୍ଡିଆ ହୁଏ ?

ତଳ ବରଡ଼ା ଖସୁଛି, ଉପର ବରଡ଼ା ହସୁଛି, ମଝି ବରଡ଼ା ଥାଇ ବୋଲୁଥିଲା ମୋ ଦିନ କାଳ ଆସୁଛି ।

ତେଲ ବଳିଲେ ପିଟାରେ ବୋଳନ୍ତି– ବଳକା ଧନର ଅଯଥା ଖର୍ଚ୍ଚ ।

ତେଲ ଘଡ଼ିରେ ହାତ, ପୁଅ ମୁଣ୍ଡରେ ହାତ– ଉଭୟ ଦିଗକୁ ଦୃଷ୍ଟି ।

ତେଲିଆ ମୁଣ୍ଡରେ ତେଲ ଦେବା– ଧନୀଲୋକକୁ ସାହାଯ୍ୟ କରିବା ।

ତିନି ଥେଣ୍ଟିଆ କାକୁଡ଼ିବାଡ଼ି, ଖା'ଶିଆଳ ଘାଡ଼ ମୋଡ଼ି– ଏକ ମାଲିକାନାରେ ନଥିଲେ କ୍ଷତି ହୁଏ ।

ତପେ ବର, ନହେଲେ-କୋପେ ବର— ଅନୁରୋଧ ଦ୍ୱାରା, ନଚେତ୍ ଧମକ ଚମକ
ଦ୍ୱାରା କାର୍ଯ୍ୟ ଆଦାୟ ।

ତେଲ ମାଲିସ୍ କରିବା— ଖୋସାମଦ୍ କରିବା ।

ତୃଣାଦପି ସୁନୀଚେନ – ଅତ୍ୟନ୍ତ ବିନୟଭାବ । (ତରୋରିବ ସହିଷ୍ଣୁନା)

ତୁ'ତ ମୁତୁରୀ, ମୁଁ ତ ମୁତୁରୀ, ହେଁସ କାହିଁ ପାଇଁ ଧୋଇବା ?— ଅପକର୍ମ କରିଥିବା
ଦୁଇଲୋକର ସମ... ବିଚାର ।

ତାସ୍ ଘର ଭଳି ଭୁଷୁଡ଼ି ପଡ଼ିବା— ଅନାୟାସରେ ଧ୍ୱଂସ ହୋଇଯିବା ।

## ଥ

ଥିଲେ ଥାଉ ପଛେ ଗୁଣ ହଜାର-ଚରିତ୍ର ନଥିଲେ ସବୁ ଅସାର— ଚରିତ୍ରହୀନ ବ୍ୟକ୍ତିର
ସମସ୍ତ ଗୁଣ ଲୁଚିଯାଏ ।

ଥାଳି ମାରିଲେ ଥାଳି ଚାଲିଯିବ— ବହୁତ ସଂଖ୍ୟା ।

ଥୁଣ୍ଟା ଗଛକୁ ଚଢ଼େଇ ଆସେ ନାହିଁ— ଧନହୀନ ଲୋକପାଖକୁ କେହି ଆସନ୍ତି ନାହିଁ ।

ଥୋଡ଼-ବଡ଼ି-ଖଡ଼ା,ଖଡ଼ା-ବଡ଼ି,ଥୋଡ଼— ଏକାକଥା ଭିନ୍ନ ରୂପରେ ।

## ଦ

ଦୃଢ଼େ ତରନ୍ତି ମୂଢ଼େ ତରନ୍ତି-ମଝି ମଝିକିଆ ବୁଡ଼ି ମରନ୍ତି— ମଧ୍ୟବିତ୍ତ ଲୋକ କେଉଁ
କୂଳକୁ ନୁହେଁ ।

ଦେଇଥିଲେ ପାଇ, ପଡ଼ିଆ ବାରିରେ ଗୋଧନ ଚରାଇ— ଦାନ କରିବା ଲୋକକୁ
ପ୍ରତିଦାନ ମିଳିଥାଏ ।

ଦଇବ ଦଉଡ଼ି ମଣିଷ ଗାଈ— ଏକ ଅଦୃଶ୍ୟ ଶକ୍ତି ମନୁଷ୍ୟର ଭାଗ୍ୟ ନିୟନ୍ତ୍ରଣ କରେ ।

ଦେଖାସୁନ୍ଦର କଖାରୁ ବଡ଼ି— ଗୁଣ ନଥାଇ ଦେଖିବାକୁ ସୁନ୍ଦର ।

ଦିଅଁ ଗଢୁ ଗଢୁ ମାଙ୍କଡ଼— ସୁନ୍ଦର କାର୍ଯ୍ୟ କରିବାକୁ ଯାଇ ଅସୁନ୍ଦର କରି ବସିବା ।

ଦଦାତି ପ୍ରତି ଗୃହ୍ଣାତି— ଦେବା-ନେବା ପ୍ରୀତିର ଲକ୍ଷଣ ।

ଦାନ୍ତ କଟମଟ କରିବା— କ୍ରୋଧାନ୍ୱିତ ହେବା ।

ଦେଉଳ ତୋଳିଲେ ନାଆଁ ପଡ଼େ, ବାଟରେ ହଗିଲେ ନାଆଁ ପଡ଼େ– ଭଲ କାର୍ଯ୍ୟ କଲେ ସୁନାମ ଓ ମନ୍ଦ କାର୍ଯ୍ୟ କଲେ ବଦ୍‌ନାମ ହୋଇଥାଏ ।

ଦୁଇ ନାଆରେ ଗୋଡ଼ ଦେବା– ଦୁଇ ପକ୍ଷକୁ ସମର୍ଥନ କରୁଥିବା ଲୋକ ବେଳେବେଳେ ବିପଦରେ ପଡ଼ିଥାଏ ।

ଦୂର ପର୍ବତ ସୁନ୍ଦର, ଦୂର ବନ୍ଧୁ ସୁନ୍ଦର– ସମସ୍ତ ଦୂରବର୍ତ୍ତୀ ଜିନିଷ ସୁନ୍ଦର ଦିଶେ ।

ଦାନ୍ତୁରୀର ହସିବା କାନ୍ଦିବା ସମାନ– ହସିଲେ କିମ୍ବା କାନ୍ଦିଲେ ଦାନ୍ତୁରୀର ମୁଖଭଙ୍ଗୀ ଏକା ଭଳି ଦିଶେ ।

ଦୁହିତା ଦୁଇ କୁଳକୁ ହିତା, ପୁଣି ଦୁଇ କୁଳକୁ ପିତା– ଝିଅର ପ୍ରଶଂସା ହେଲେ ଶାଶୁଘର ବାପଘର ଉଭୟଙ୍କର ସୁନାମ; ଆଉ ନିନ୍ଦା ହେଲେ ଉଭୟଙ୍କର ବଦ୍‌ନାମ ।

ଦୀପତେଜି ହାତ ଚିକ୍କଣ କରିବା– ପରକୁ ସାହାଯ୍ୟ କରିବା ବାହାନାରେ ନିଜର ସ୍ୱାର୍ଥ ହାସଲ କରିବା ।

ଦାନ୍ତ ନିକୁଟି ହେବା– ନିଜର ଅସାମର୍ଥ୍ୟ ପ୍ରକାଶକରି ଭିକ୍ଷା ମାଗିବା ।

ଦେହରୁ ତେଲ ଖସି ପଡୁଥିବା– ସୁନ୍ଦର ସ୍ୱାସ୍ଥ୍ୟ ଥିବା ।

ଦାନ୍ତରେ କୁଟା ଧରିବା– ପାପ ଲାଗି ପ୍ରାୟଶ୍ଚିତ୍ତ କରିବା ।

ଦେଢ଼ଶୁରକୁ ଭାଇବୋହୂ ଅଛୁଆଁ– ଦେଢ଼ଶୁର ଭାଇବୋହୂ ପରସ୍ପରକୁ ଛୁଇଁଦେବା ପାପ, ତେଣୁ ଯଥେଷ୍ଟ ଦୂରତ୍ୱ ରଖି ଚଳିବା ଆବଶ୍ୟକ ।

ଦୁଧ ଉତୁରିଲେ ଚୁଲ୍ଲୀକୁ-ମଣିଷ ଉତୁରିଲେ ଗାତକୁ– ଅହଂକାର ଦେଖାଇହେବା ଲୋକର ମୃତ୍ୟୁ ନିକଟ ବୋଲି ବୁଝିବାକୁ ହେବ ।

ଦେ-ଦେଉଣୀଙ୍କୁ କୋଳଥ ମଣ୍ଡା– ସାଧାରଣତଃ ମାଗିବାକୁ ଆସିଥିବା ଲୋକଙ୍କୁ ଛେନାପୁର ବା ନଡ଼ିଆପୁର ମଣ୍ଡା ନଦେଇ କୋଳଥପୁର ମଣ୍ଡା ଦେଇଥାନ୍ତି ।

ଦୀପତଳ ଅନ୍ଧାର– ଆଲୋକର ଅତି ନିକଟରେ ଥାଇ ମଧ୍ୟ ଅନ୍ଧାରରେ ରହିବା ।

ଦେଉଳକୁ ମୁଖଶାଳା ବଳିଯିବା– ପ୍ରସ୍ତୁତି ମୂଳକଥାକୁ ଟପିଯିବା ।

ଦିନେ ନାହିଁ କାଲେ ନାହିଁ-ଗହ୍ଳା ପୂନେଇରେ ମାଇଁ– ନିଜର ସ୍ୱାର୍ଥସାଧନ ପାଇଁ ହଠାତ୍ ଆସି ଆତ୍ମୀୟତା ପ୍ରଦର୍ଶନ କରିବା ।

ଦେଶକେ ଫାଙ୍କ୍ ନଈକେ ବାଙ୍କ୍– ଦେଶ ଗୁଣେ ଲୋକଚରିତ୍ରରେ ପାର୍ଥକ୍ୟ ।

ଦିଅଁ ଖାଇ-ଖଟୁଲି ଖାଇବା– ସର୍ବସ୍ୱ ଆତ୍ମସାତ୍ କରିବା ।

ଦୋଦୋ ପାଞ୍ଚ– ଦ୍ୱିଧାଗ୍ରସ୍ତ ହେବା ।

ଦେଲା ପୁଅ ଗେହ୍ଲା– ଦେଉଥିବା ଲୋକ ଆଦର ପାଏ ।
ଦିବା ସ୍ୱପ୍ନ– ଅସମ୍ଭବ କଳ୍ପନା ।
ଦାନ୍ତ ପଡ଼ିଗଲେ ଏହାର ଉପକାରିତା ମଣିଷ ବୁଝିଥାଏ– ସୁବିଧା ଥିବାଯାଏ ଅସୁବିଧା କଥା ମନେପଡ଼େ ନାହିଁ ।

## ଧ

ଧୂଆ-ମୂଳା ଅଧୂଆ-ମୂଳା ସବୁ ସମାନ– ଭଲ ମନ୍ଦର ପାର୍ଥକ୍ୟ ନ ରଖିବା ।
ଧରାକୁ ସରା ମଣିବା– ଗର୍ବ ଓ ଅହଂକାରରେ ସମସ୍ତଙ୍କୁ ହୀନ ଦୃଷ୍ଟିରେ ଦେଖିବା ।
ଧୀର ପାଣି ପଥର କାଟେ– ଧୀରେ ସୁସ୍ଥେ କରିବା କାମ ସଫଳ ହୁଏ ।
ଧଳା ହାତୀ ପୋଷିବା– ବଡ଼ ବଡ଼ କର୍ମଚାରୀଙ୍କୁ ଅଧିକ ବେତନ ଦେଇ ରଖିବା ।
ଧୋବଳି ଠକ– ଭଦ୍ର ଚୋର ।
ଧରି ମାଇଲେ ଯାହା-ବାନ୍ଧି ମାଇଲେ ତାହା– ଏକା କଥାର ବିଭିନ୍ନ ରୂପ ।
ଧାନ ଉଁଷୁଆ ହାଣ୍ଡିଭଳି ମୁହଁ କରିବା– ରାଗ ଓ ଅଶାନ୍ତିର ଚିହ୍ନ ।
ଧୋବାଘର କୋଇଁ– ଇସ୍ତ୍ରୀକରା ସଫା ବେଶପୋଷାକ ପିନ୍ଧିଥିବା ଲୋକ ।

## ନ

ନରେ ବା କୁଞ୍ଜରେ ଅଶ୍ୱତ୍ଥାମା ହତ– ସିଧା କଥା ନକହି ବୁଲେଇ କରି ମିଛ କହିବା ।
ନାକ ଟେକିବା– ଘୃଣା କରିବା ।
ନିଜ ଗୋଡ଼ରେ କୁରାଢ଼ି ମାରିବା– ନିଜ କାର୍ଯ୍ୟ ଦ୍ୱାରା ନିଜର କ୍ଷତି ସାଧନ କରିବା ।
ନିଜ ଗାଡ଼ ନିଜେ ଖୋଳିବା– ନିଜପାଇଁ ବିପଦ ଡାକିଆଣିବା ।
ନ ଦେଖିଲା ଓଉ ଛଅଫଡ଼ା– ନଦେଖିବା ଲୋକ ନିକଟରେ ଅତିରଞ୍ଜିତ ବର୍ଣ୍ଣନା କରିବା ।
ନଅ ଛଅ କରିବା– ଅଯଥାରେ ଧନ ସଂପଦର ଅପବ୍ୟୟ ।
ନଖରେ ଛିଣ୍ଡିବା କଥାକୁ କୁରାଢ଼ି ଲଗାଇବା– ସାମାନ୍ୟ କଥାକୁ ଅକାରଣ ବଢ଼ାଇଦେବା ।

ନାହିଁ ମାମୁଠାରୁ କଣାମାମୁ ଭଲ– ଆଦୌ ନଥିବା ଅପେକ୍ଷା ଅଳ୍ପ କିଛି ଥିବା ଭଲ ।

ନ ହି ସୁପ୍ତସ୍ୟ ସିଂହସ୍ୟ ପ୍ରବିଶନ୍ତି ମୁଖେ ମୃଗାଃ– ଉଦ୍‌ଯୋଗ ନକଲେ ଫଳ ମିଳେ ନାହିଁ ।

ନଅ ନୀର ନଅ ତୀର– ଦରିଦ୍ର ଅବସ୍ଥା ।

ନାଲିବତୀ ଜଳିବା– ଦେବାଳିଆ ହୋଇଯିବା ।

ନାକରେ କାଠି ପୂରେଇ ଛିଙ୍କିବା– କିଛି କାରଣ ନଥାଇ ଆପେ ଆପେ ବିପଦକୁ ଡାକିବା ।

ନଇକେ ବାଙ୍କ୍-ଦେଶକେ ଫାଙ୍କ୍– ଭିନ୍ନ ଭିନ୍ନ ଅଞ୍ଚଳର ଚଳଣି ଭିନ୍ନ ଅଟେ ।

ନଇ ନଦେଖୁଣୁ ନଙ୍ଗଳା– କୌଣସି ଘଟଣା ସଂପର୍କରେ କିଛି ନବୁଝି ପ୍ରତିକାର କଥା ଚିନ୍ତା କରିବା ।

ନାଗ ଚୁଚୁନ୍ଦ୍ରା ଧରିବା– ଗନ୍ଧ ଯୋଗୁଁ ଗିଳିପାରେ ନାହିଁ, ଛାଡ଼ିଦେଲେ କାମୁଡ଼ି ଦେବାର ଭୟ ।

ନ ଦେବ ଧନ କହିବ ଦିବ୍ୟ ବଚନ– ମିଠା କଥା କହିବା ଧନ ଦେବାଠାରୁ ଭଲ ।

ନ ଯଯୌ ନ ତସ୍ଥୌ– ଦୋଘାଇରେ ପଡ଼ି କର୍ତ୍ତବ୍ୟ ସ୍ଥିର କରି ନପାରିବା ।

ନାଲି ଆଖି ଦେଖେଇବା– କ୍ରୋଧାନ୍ୱିତ ହେବା ।

ନିର୍ବାଣ ଦୀପେ କିମୁ ତୈଳ ଦାନଂ– ଲିଭି ଯାଇଥିବା ଦୀପରେ ତେଲ ଦେଇ କିଛି ଲାଭ ହୁଏ ନାହିଁ ।

ନିଆଁ ଗିଳା କଥା– ଅତ୍ୟନ୍ତ ଅସମ୍ଭବ ତାହା ମିଛ ।

ନଈରେ ହଜେଇ ପୋଖରୀରେ ଖୋଜିବା–ଗୋଟାଏ ଜାଗାରେ ହଜାଇ ଅନ୍ୟ ଜାଗାରେ ଖୋଜିବା ।

ନଈରେ ବାଳିଆ ଚହଟିଲା, କହଲ ସୁନ୍ଦର ନାଆ ଲୋ ରାଣ୍ଡ ପୁଣି କାଳିଆ ଲେଉଟିଲା– ଏକ ଦୃଢ଼ମୂଳ ବିଶ୍ୱାସକୁ ଅସାର ପ୍ରମାଣିତ କରି କୌଣସି ଅସମ୍ଭବ ଘଟଣାର ପୁନରାବୃତ୍ତି ହେବା ।

ନିନ୍ଦନ୍ତୁ ନୀତି ନିପୁଣା ଯଦି ବା ସ୍ତୁବନ୍ତୁ, ଲକ୍ଷ୍ମୀ ସମାବିଶତୁ ଗଚ୍ଛତୁ ବା ଯଥେଚ୍ଛଂ
ଅଦ୍ୟୈବ ମରଣଂ ଯୁଗାନ୍ତରେ ବା, ନ୍ୟାୟାଦ୍ ପଥାଦ୍ ପ୍ରବିଚଳନ୍ତି ପଦଂ ନ ଧୀରାଃ– ଯେତେ ବିପଦ ଆସିଲେ ମଧ୍ୟ ବିଜ୍ଞଲୋକ ନ୍ୟାୟପଥରୁ ଟଳନ୍ତି ନାହିଁ ।

ନାହିରେ ତେଲ ଦେଇ ଶୋଇବା– କୌଣସି ଚିନ୍ତା ନ କରି ନିଶ୍ଚିନ୍ତ ରହିବା ।

ନଳ ଆଗରେ ବଳ ଅଛି କାହାର– ମପାମପି ଦ୍ୱାରା ଯାହାର ଭାଗ ଯେଉଁଠି ଜଣା ପଡ଼ିଗଲେ ଆଉ କାହାର କିଛି କହିବାର ନଥାଏ ।

ନ ଦେଖିଲା ଲୋକ ଦେଖ-କଇଁଚ କାଢ଼ିଛି ବେକ— ଯିଏ ସାଧାରଣତଃ କିଛି କରେ ନାହିଁ ସିଏ କିଛି କଲେ ସେଥିପ୍ରତି ଅନ୍ୟର ଦୃଷ୍ଟି ଆକର୍ଷଣ କରିବା ।

ନିଆଁ ନ ଥାଇ ଧୂଆଁ ନାହିଁ— ପ୍ରତ୍ୟେକ ଘଟଣାର କିଛି ପୃଷ୍ଠଭୂମି ଥାଏ ।

ନ ଦୁଃଖଂ ପଞ୍ଚଭିଃ ସହ— ପାଞ୍ଚଲୋକ ଏକତ୍ର ଥିଲେ ଦୁଃଖ ସହି ହୋଇଯାଏ ।

ନିଁଶ ଉଠା ପାଠ, ଆଉ ଛତୁ ଫୁଟା କାଠ— କାଠରେ ଛତୁ ଫୁଟିଗଲେ ତାହା ପାମରା ହୋଇଯାଏ, ନିଶ ଉଠିଗଲେ ପାଠ ପଢ଼ାରେ ଧ୍ୟାନ ରହେନାହିଁ ।

ନଷ୍ଟସ୍ୟ କାନ୍ୟା ଗତିଃ— ଯେ ନଷ୍ଟ ହୋଇଛି ତା'ର ସଦ୍‌ଗତି ନାହିଁ ।

ନେଡ଼ି ଗୁଡ଼ କହୁଣିକି ବୋହିଯିବା— ଆୟଉ ବାହାରକୁ ଚାଲିଯିବା ।

ନ ବନ୍ଧୁର୍ମଧ୍ୟେ ଧନହୀନ ଜନଃ— ବନ୍ଧୁ ମେଳରେ ଦରିଦ୍ରର ସମ୍ମାନ ନ ଥାଏ ।

ନଇଁ ପଡ଼ିଲେ ଲହଡ଼ି ଯାଏ— ସହିଗଲେ କଳି ଟଳିଯାଏ ।

ନାଟର ଗୁରୁ ଗୋବର୍ଦ୍ଧନ— ସବୁକଥାର ମୂଳ ।

ନମ୍ରନ୍ତି ଫଳିନୋ ବୃକ୍ଷାଃ— ଫଳ ଫଳିଥିଲେ ଗଛ ନଇଁବା ଭଳି ଗୁଣଥିବା ଲୋକ ନମ୍ର ହୁଅନ୍ତି ।

ନିଜ ଗୋଡ଼ରେ ଠିଆହେବା— ନିଜ ଉଦ୍ୟମରେ ନିଜକୁ ପ୍ରତିଷ୍ଠିତ କରିବା ।

ନାଲିକନା ଦେଖାଇବା— ବିପଦର ସଙ୍କେତ ।

ନଅ ତିଅଣ-ଛଅ ଭଜା— ପ୍ରାଚୁର୍ଯ୍ୟର ଚିହ୍ନ ।

ନିକିତି ତଉଲ ସାନ ବଡ଼କୁ— ଓଜନରେ ପଲାର ତଳକୁ ଯାଇଥିବା ପାଖ ଭାରି ।

ନିଲଜ ଲାଉ, ଟେକି ଟାକି ଦେଲେ ପିଢ଼ାକୁ ଯାଉ— ଲଜ୍ଜାହୀନ ଲୋକ ସବୁ କରିପାରେ ।

ନିଜେ ନ ମଲେ କେହି ସ୍ୱର୍ଗ ଦେଖେ ନା'— ପର ଉପରେ ନିର୍ଭର ନ କରି ନିଜେ ଚେଷ୍ଟା କ ରିବା ଉଚିତ ।

ନିଆଁରେ ଘିଅ ଢ଼ାଳିବା— ଅବସ୍ଥାକୁ ଅଧିକ ଉତ୍ତେଜିତ କରିବା ।

## ପ

ପାଲିଙ୍କି ଉପରେ ପାଟଛତା— ସଂପଦ ଉପରେ ସଂପଦ ଜମା ହେବା ।

ପର ଧନରେ ମଙ୍ଗଳବାର— ନିଜ ଧନ ଖରଚ ନକରି ପର ପଇସାରେ ଓଷା ପୁନିଅ କରିବା ।

ପରଲୁଗା ପିନ୍ଧି ଯାତକୁ ଯାଏ, ପଚାରିଲେ ମୁଣ୍ଡ ଟୁଙ୍ଗାରୁଥଏ— ପରଜିନିଷରେ ଫେସନ ହେବା ଓ ସଉକ କରିବା ।

ପୋଡ଼ିଗଲା ଡିଅଣରେ ସୁଆଦ ନଥାଏ— ଥରେ ଅବିଶ୍ୱାସ ବା କଳି ସୃଷ୍ଟିହେଲେ ପୂର୍ବର ସ୍ନେହଶ୍ରଦ୍ଧା ରହେ ନାହିଁ ।

ପାଞ୍ଚ ଆଙ୍ଗୁଳି ସମାନ ନୁହେଁ— ବିଦ୍ୟା, ବୁଦ୍ଧି, ସ୍ୱଭାବରେ ସମସ୍ତେ ସମାନ ନୁହନ୍ତି ।

ପିମ୍ପୁଡ଼ି ଦୀପରୁଖା ଉପରେ ଚଢ଼ିଲେ ଭାବେ ସ୍ୱର୍ଗ ଆଉ ଦି' ଆଙ୍ଗୁଳ— ନୀଚମନା କିଛି ସଂପଦ ଲାଭକଲେ ଗର୍ବରେ ଫାଟିପଡ଼େ ।

ପାଟିରେ ମଣ୍ଡା ପଶିବା— ଆବଶ୍ୟକ ଥାଇ ମଧ୍ୟ କିଛି ନ କହିବା ।

ପୟଃ ପାନ ଭୁଜଙ୍ଗାନାଂ କେବଳ ବିଷବର୍ଦ୍ଧନମ୍— ଦୁଷ୍ଟଲୋକକୁ ପ୍ରଶୟ ଦେଲେ ସେମାନଙ୍କର ବହପ ବଢ଼ିଯାଏ ।

ପଲକଯାକ ମୂଷା ଖାଇସାରି ବିରାଡ଼ି ବୃନ୍ଦାବନ ବାହାରିବା— ସାରାଜୀବନ ମନ୍ଦ କାର୍ଯ୍ୟ କ ରି କରି ଶେଷ ଜୀବନରେ ବାବାଜି ସାଜିବା ।

ପାଚିଲା ବାଳରେ ସିନ୍ଦୂର ପିନ୍ଧିବା— ବୃଦ୍ଧାବସ୍ଥାରେ ସଧବା ରହିବା ।

ପତର ଗୋଟେଇବା ଲୋକ ତୋଟା ମୂଲ କରିବା— ସ୍ୱଳ୍ପ ସମ୍ବଳ ଥିବା ବ୍ୟକ୍ତି ବିଶାଳ ଯୋଜନା ସଂପର୍କରେ ମୁଣ୍ଡ ଖେଳେଇବା ।

ପୁରୀ ଦେଉଳର କୁମ୍ଭାରୁଣୀ ପ୍ରତିଦିନ ଦେଉଳକୁ ହାଣ୍ଡି ଦେବାକୁ ଆସୁଥିଲେ ମଧ୍ୟ ଆସନ୍ତାକାଲି ଜଗନ୍ନାଥ ଦର୍ଶନ କରିବାର ଇଚ୍ଛା ପୂରଣ ହୁଏନାହିଁ ।

ପଞ୍ଚାକ୍ଷର ଜପିହେବା— ଦରିଦ୍ର ଅବସ୍ଥା ।

ପିଠି ଗଲୁ କରିବା— ମାଡ଼କୁ ନିମନ୍ତ୍ରଣ କରିବା ।

ପେଟରେ ଭୋକ ମୁହଁରେ ଲାଜ— ଆବଶ୍ୟକତା ଥାଇ ମଧ୍ୟ ଲାଜରେ ନ କହିବା ।

ପଚା ପଇଡ଼, ଭାସି ଯାଉଥିଲୁ ମଝି ନଈର, ଧରି ଆଣିଥିଲି ତୋତେ,
ଠକରା ଗାଲରେ ମାଉଁସ ଲାଗିଲା ଜବାବ ଦେଉଛୁ ମୋତେ— କୃତଘ୍ନ ବ୍ୟକ୍ତିକୁ ବାକ୍ୟବାଣ ।

ପରମୁଣ୍ଡରେ ଅଠା ବୋଳିବା— ନିଜେ ଦୋଷ କରି ଅନ୍ୟକୁ ଦୋଷ ଦେବା ।

ପୁନର୍ମୂଷିକୋ ଭବ— ପୂର୍ବରୁ ଯେଉଁ ଅବସ୍ଥା ଥିଲା ସେହି ଅବସ୍ଥାକୁ ଫେରିଯିବା ।

ପାସଙ୍ଗରେ ନ ପକାଇବା— ଖାତର ନ କରିବା ।

ପାଖେଇ ପାଖେଇ ଜାଉ ଖାଇବ— କାର୍ଯ୍ୟର ବିଶାଳତାରେ ଚିନ୍ତିତ ନହୋଇ ଧୀରେ ଧୀରେ ଆରମ୍ଭ କରିବ ।

ପଣ କାହାଣିଆ ନୀତି— ଅଳ୍ପଦେବ ନାହିଁ, ବେଶୀଦେବାକୁ ବାଧ୍ୟ ହେବ ।

ପାଣି ପିଇବ ଛାଣି, କଉଡ଼ି ନେବ ଗଣି— ପଇସା ସବୁବେଳେ ଗଣିକରି ନେବ ।

ପାଖରେ ଶୁଏ, କାନରେ କୁହେ, ତା'କଥା କି ଅନ୍ୟଥା ହୁଏ ?— ସ୍ୱାମୀ-ସ୍ତ୍ରୀ ପରସ୍ପରର କଥାକୁ କେହି ଅମାନ୍ୟ କରିପାରନ୍ତି ନାହିଁ ।

ପରକୁ ମାନ କରି ଖପରାରେ ଖାଇବା— ଅନ୍ୟ ଉପରେ ଅଭିମାନ କରି ନିଜେ କଷ୍ଟ ପାଇବା ।

ପାଣିରେ ସର ପକାଇଦେବା— କଥାର ଚାତୁରୀରେ ଅନ୍ୟକୁ ବଶ କରିବା ।

ପଣ୍ଡିତ ପୁଅ ମାଙ୍କଡ଼ ମାରିଲେ ଦୋଷ ନାହିଁ— ଦୋଷ କଲେ ସମସ୍ତେ ଦଣ୍ଡ ପାଆନ୍ତି, ମାତ୍ର ବଡ଼ଲୋକଙ୍କ ପିଲା ଛାଡ଼ ପାଇଯାନ୍ତି ।

ପିଠି ଆଉଁଷି କାମ କରାଇବା— କୋମଳ କଥା କହି କାର୍ଯ୍ୟ କରାଇନେବା ।

(ପାଗ ବାନ୍ଧୁ ବାନ୍ଧୁ କଚେରୀ ବରଖାସ୍ତ,

ପଗଡ଼ି ବାନ୍ଧୁ ବାନ୍ଧୁ ଘୁଷୁରି ଯାଇ ମଙ୍ଗଳପୁରରେ)— ଅଳସୁଆ ଲୋକ ପ୍ରସ୍ତୁତ ହେବା ପାଇଁ ବିଳମ୍ବ କଲେ କାର୍ଯ୍ୟନାଶ ହୁଏ ।

ପିଠିରେ ପଡ଼ିବା— ସାହାଯ୍ୟ କରିବା ।

ପେଚା ଚଢ଼େଇକୁ ସୁବର୍ଣ୍ଣ ପଞ୍ଜୁରି— କୁତ୍ସିତ ବ୍ୟକ୍ତି ଲାଗି ଐଶ୍ୱର୍ଯ୍ୟପୂର୍ଣ୍ଣ ପ୍ରାସାଦ ।

ପୁଅ ମୁଣ୍ଡ ନୁଖୁରା ରହିବ ନାହିଁ-କି-ତେଲଘଡ଼ି ଖଣ୍ଡିଆ ହେବ ନାହିଁ— କାର୍ଯ୍ୟ ହାସଲ କରିବା ଇଚ୍ଛା, ମାତ୍ର ଖର୍ଚ୍ଚ କରିବାରେ କୃପଣତା ।

ପାଣିର ଗାର— ଅସ୍ଥାୟୀ ବା ଦୃଢ଼ତା ବିହୀନ ।

ପୁସ୍ତକଗତ ବିଦ୍ୟା ଓ ପରହସ୍ତଗତ ଧନ— ଠିକ୍ ସମୟରେ କାର୍ଯ୍ୟରେ ଆସୁନଥିବା ପଦାର୍ଥ ।

ପଦ୍ମ ଘୁଞ୍ଚି ଘୁଞ୍ଚି ଯିବା— କ୍ରମେ ବିଳମ୍ବ ଘଟିବା ।

ପୋଥି ବାଇଗଣ ଓ ବାଡ଼ି ବାଇଗଣ— ବାଇଗଣର ଛବି ଓ ପ୍ରକୃତ ବାଇଗଣ; ଅର୍ଥାତ୍ ପରୋକ୍ଷ ଜ୍ଞାନ ଓ ପ୍ରତ୍ୟକ୍ଷ ଜ୍ଞାନ ।

ପଳେଇ ପଶିଲି ମାଉସୀ ଘରେ, ମାଉସୀ ମାଇଲା ଦି'ପହରେ— ଅତି ବିଶ୍ୱାସୀର ବିଶ୍ୱାସଘାତକତା ।

ପାପ ଧନ ପ୍ରାୟଶ୍ଚିତ୍ତରେ ଯାଏ— ଖରାପବାଟେ ଅର୍ଜିତ ଧନ ନଷ୍ଟ ହୁଏ ।

ପ୍ରକୃତି ନୈବ ମୁଚ୍ୟତେ– ସ୍ୱଭାବ ପରିବର୍ତ୍ତିତ ହୁଏ ନାହିଁ ।

ପାଣିରେ ବାସ କରି କୁମ୍ଭୀର ସଙ୍ଗେ ବାଦ– କୌଣସି ଲୋକର ପ୍ରଭାବ ଥିବା ଜାଗାରେ ତା ସହ ବିବାଦ କରିବା ।

ପର୍ବତର ମୂଷିକ ପ୍ରସବ– ଜଣଙ୍କଠାରୁ ଆଶା କରୁଥିବା କାର୍ଯ୍ୟର ପରିମାଣ ଅତ୍ୟଳ୍ପ ହେବା ।

ପଇସା କ୍ୟା ନକରେ କାମ-ଆବେ ପର୍ଶୁ ଯାବେ ପର୍ଶୁ, ବାବୁ ପର୍ଶୁରାମ– ଗରିବ ଅବସ୍ଥାରେ ସମ୍ମାନ ମିଳୁ ନ ଥିବା ଲୋକର ଧନ ହୋଇଗଲେ ସମ୍ମାନ ମିଳେ ।

ପୁଅ ଯଦି ଯୋଗ୍ୟ ହୁଏ-ଧନ କାହିଁ ପାଇଁ ସଞ୍ଚୁ, ପୁଅ ଯଦି ଅଯୋଗ୍ୟ ହୁଏ-ଧନ କାହିଁ ପାଇଁ ସଞ୍ଚୁ ?– ଯୋଗ୍ୟ ପୁଅ ଓ ଅଯୋଗ୍ୟ ପୁଅର ତୁଳନାତ୍ମକ ଚିତ୍ର ।

ପୁଅରେ ଦାୟ-ନା-ବାରଣ' ବଢ଼େଇରେ ଦାୟ ?– ବ୍ୟକ୍ତିଗତ ସ୍ୱାର୍ଥ ନୁହେଁ, ସମୂହ ସ୍ୱାର୍ଥପ୍ରତି ଧ୍ୟାନଦେବା ବିବେକର କର୍ତ୍ତବ୍ୟ ।

ପେଟରେ ଭୋକ, ମୁହଁରେ ଲାଜ– ଇଚ୍ଛାଥାଇ ମାଗି ନ ପାରିବା ।

ପିଠିରେ ଢଡ଼ାତେଲ ମାରି ଆସିବା– ମାଡ଼ ଖାଇବାକୁ ପ୍ରସ୍ତୁତ ହୋଇ ଆସିବା ।

ପାଞ୍ଜି ପୋଛାଯିବା– ମୃତ୍ୟୁ ନିକଟ ହେବା ।

ପୁଅ ନାହିଁ, ପୁଅ ପେଟରେ-ପୁଅପାଇଁ ବାପା ଖଟୁ ଗଢ଼ଉଛି ବନମାଳୀପୁର ହାଟରେ– ଭବିଷ୍ୟତ ପାଇଁ ବୃଥା ଆଶାବାଦୀ ହୋଇ ପୂର୍ବରୁ କିଛି କରିବସିବା ବା ଅନିଶ୍ଚିତତା ଉପରେ ଅତ୍ୟଧିକ ଆସ୍ଥା ସ୍ଥାପନ କରିବା ।

ପାଣି ଫାଟିଯିବା– ନଷ୍ଟ ହୋଇଯିବା ।

## ଫ

ଫଟା କାଛରେ କାଦୁଅ ଲେପିବା– କଳି ବା ଅବିଶ୍ୱାସ ହେବା ପରେ ଅବସ୍ଥା ସୁଧାରିବାକୁ ବୃଥା ଚେଷ୍ଟା କରିବା ।

ଫଟା କପାଳ– ମନ୍ଦ ଭାଗ୍ୟ ।

ଫମ୍ପା ମାଠିଆର ଆବାଜ ବେଶୀ– ଗଭୀର ଜ୍ଞାନ ନଥିବା ଲୋକ ବେଶୀ ଚବର ଚବର ହୁଅନ୍ତି ।

ଫିଟିକି ବିସିନି– ଫେସନ ହେବା ।

ଫଁ ଫଁ ହେବା– କ୍ରୋଧଜର୍ଜରିତ ହେବା ।

ଫଳେ ପୁଷ୍ପେ ସନ୍ତୁଷ୍ଟ କରିବା– ଯତ୍ ସାମାନ୍ୟ ଦେଇ ଅନ୍ୟକୁ ସନ୍ତୁଷ୍ଟ କରିବା ।

ଫଳରୁ ଗଛର ପରିଚୟ ମିଳେ– ବଂଶର ସ୍ୱଭାବ ବଂଶଧରଠାରୁ ଜଣାପଡ଼େ ।

ଫଳେନ ପରିଚୟତେ– କାର୍ଯ୍ୟରୁ ପ୍ରକୃତି ଜଣାପଡ଼େ ।

ଫସର ଫାଟିବା– ବ୍ୟର୍ଥ ହେବା ।

ଫଟା ପାହୁଲା (କଉଡ଼ି) ନ ଥିବା– ଉତ୍କଟ ଦାରିଦ୍ର୍ୟ ।

ଫୁଲା ଫାଙ୍କିଆ– କୌଣସି କାମରେ ଯୋଗ ନ ଦେବା ।

ଫୁସ୍ ଫାସ୍ ହେବା– ଅନୁଚ୍ଚ ସ୍ୱରରେ କଥାବାର୍ତ୍ତା ।

ଫୁସ୍ ହୋଇଯିବା– ବ୍ୟର୍ଥ ହୋଇଯିବା ।

ଫାଲ୍‌ତୁ– ମୂଲ୍ୟହୀନ ।

## ବ

ବାରଜାତି ତେର ଗୋଳା, ବୈଷ୍ଣବ ହେଲେ ସବୁ ଗଳା– ବିଷ୍ଣୁଭକ୍ତର କୌଣସି ଜାତି ବିଚାର ନଥାଏ ।

ବିରାଡ଼ି ବୈଷ୍ଣବ– ଠକ ।

ବିଲେଇ ଆଖି ବୁଜି ଦୁଧ ପିଉଛି– ଲୁଚେଇ ଲୁଚେଇ ମନ୍ଦ କାମ କରୁଛି, ଭାବୁଛି କେହି ଜାଣୁ ନାହାନ୍ତି ।

ବକ ଧ୍ୟାନ– ଏକ ଲୟରେ କାର୍ଯ୍ୟ କରିବା ।

ବିନାଶ୍ରୟେ ନ ବର୍ତ୍ତନ୍ତେ କବିତା, ବନିତା, ଲତା– କବିତ୍ୱ, ଝିଅପିଲା ଏବଂ ଲତା- ଏମାନଙ୍କର ଅନ୍ୟର ସାହାଯ୍ୟ ଲୋଡ଼ାହୁଏ ।

ବଡ଼ ବଡ଼ ଗଲେ ଫସର ଫାଟି-ସାନ ଆସିଲେ ବେସର ବାଟି– ଶକ୍ତିମାନ୍ ଲୋକ ଯାହା କରିବାକୁ ବିଫଳ ହୋଇଛନ୍ତି, ଶକ୍ତିହୀନ ଲୋକ ତାହା କରିବାକୁ ଉଦ୍ୟମ କରିବା ।

ବେହିଆ ଗାଣ୍ଡିରେ ବଥ ଉଠିଲେ ସେ କହେ ଛାଇ ହୋଇଛି– ଲାଜ ସରମ ନଥିବା ଲୋକ ।

ବଥ ବଥାଏ ନା ଆବୁ ବଥାଏ– ରକ୍ତର ସଂପର୍କ ଥିଲେ ଆପଣା ଛାଏଁ ସହାନୁଭୂତି ଆସେ ।

ବୃଦ୍ଧାଙ୍ଗୁଳି ଦେଖେଇବା–ବେଖାତିର୍ କରିବା ।

ବାଞ୍ଝ ମାଇପର କି ପାଇଚି, ହଗିଲା ମୂତିଲା ବି' ପାଇଚି– ଅଳସୁଆ ଲୋକ ପ୍ରତି ପ୍ରଯୁଜ୍ୟ ।

ବିରାଡ଼ି କପାଳକୁ ଶିକା ଛିଡ଼ିବା– ଭାଗ୍ୟ ବଳରେ ଆଶା କରି ନଥିବା ପଦାର୍ଥ ପାଇଯିବା ।

ବାନ୍ଧିଲା ଘୋଡ଼ା ଘାସ ଖାଏ– ଧୈର୍ଯ୍ୟ ଧରି ରହିଥିଲେ ଫଳ ମିଳିଥାଏ ।

ବାଘଛାଲ ଘୋଡ଼େଇ ହୋଇଥିବା ଗଧିଆ–ନିଜେ ଯାହା ନୁହଁ, ସେପରି ବଡ଼ପଣ ଦେଖେଇହେବା ।

ବିଧାମାରି ପଣସ ପଚେଇବା– ଠିକ୍ ସମୟ ହୋଇନଥିଲେ ମଧ୍ୟ ବଳପୂର୍ବକ କିଛି କାର୍ଯ୍ୟ କରିବା ।

ବୋପା ରାଣ୍ ଡିଙ୍କି ଗିଳ୍– ଅସମ୍ଭବ କାର୍ଯ୍ୟ କରିବାକୁ କହିବା ।

ବେନିଜନେ ପଡ଼ିଛି ସମଦଶା– ଉଭୟ ବନ୍ଧୁଙ୍କ ଏକାଭଳି ଦୁର୍ଦ୍ଦଶା ଘଟିବା ।

ବେନି ଆଙ୍ଗୁଳ ନଖଟ– ଅଳ୍ପ ପାର୍ଥକ୍ୟ ରହିଯିବା ।

ବସି ଖାଇଲେ ନଈବାଲି ସରେ– କିଛି ଉପାର୍ଜନ ନ କରି କେବଳ ସଞ୍ଚିତ ଧନ ଉପରେ ନିର୍ଭର କଲେ ଦିନ ଆସେ ଯେତେବେଳେ ସବୁ ଶେଷ ହୋଇଯାଏ ।

ବେଙ୍ଗ କହେ ବେଙ୍ଗୁଲି ଲୋ ପୃଥୀ କ୍ଷଣକ୍ଷଣକେ ଆନ– ଦୁନିଆ ପରିବର୍ତ୍ତନଶୀଳ ।

ବାରଣ ବଢ଼େଇରେ ଦାୟ-ନା-ପୁଅରେ ଦାୟ–ସମାଜର କଲ୍ୟାଣ ପାଇଁ ବ୍ୟକ୍ତି ସ୍ୱାର୍ଥବଳି ଦିଏ ।

ବିଲେଇକୁ ହାତ କାମୁଡ଼ା ଶିଖାଇବା– ଦୁଷ୍ଟଲୋକକୁ ମନ୍ଦକାର୍ଯ୍ୟ କରିବା ଶିକ୍ଷା ଦେବା ।

ବୃଦ୍ଧା ବେଶ୍ୟା ତପସ୍ୱିନୀ– ବେଶ୍ୟାବୃତ୍ତି କରି କରି ଜୀବନ ବିତେଇଥିବା ବୃଦ୍ଧା ତପସ୍ୱିନୀ ସାଜିବା କେବଳ ଭଣ୍ଡାମି ।

ବାମନର ଚନ୍ଦ୍ରକୁ ହାତ ବଢ଼ାଇବା– ଅସମ୍ଭବ ଆଶା ପୋଷଣ କରିବା ।

ବାହାବେଳେ ବାଇଗଣ ରୋଇବା– ଏଭଳି କାମ ଫଳପ୍ରଦ ହୁଏନାହିଁ ।

ବିନା ମେଘରେ ବଜ୍ରପାତ– ଅକସ୍ମାତ୍ ବିପଦ ପଡ଼ିବା ।

ବେଲ ପାଚିଲେ କାଉର କି ଯାଏ ?– କୌଣସି ଜିନିଷକୁ ଉପଭୋଗ କରିବାର ଅକ୍ଷମତା ।

ବୁଢ଼ା ଶୁଆ କଟର କଟର– ବୁଢ଼ା ହୋଇଗଲେ ସ୍ୱରର ମିଷ୍ଟତା ନଥିବାରୁ ଶ୍ରୁତିକଟୁ ଲାଗେ ।

ବଗରେ ବଗ ଧାନ କୁଟିବୁ-ନା-ମୋ ନଳୀ ଗୋଡ଼ଟି ଭାଙ୍ଗିଯିବ ।

ବଗରେ ବଗ ମାଛ ଖାଇବୁ-ନା-ତହିଁକି ଗୋସେଇଁ ଆଗ– ପରିଶ୍ରମକାତର ବ୍ୟକ୍ତି ସର୍ବପ୍ରଥମେ ଉପଭୋଗ କରିବାକୁ ଚାହିଁବା ।

ବିରି ବାଡ଼ିଆ ଦେଖି କୋଳଥ ଚେପା– ଅନ୍ୟର ଦଣ୍ଡ ଦେଖି ଭୟରେ ଥରହର ହେବା ।

ବାର ବରଷର ତପସ୍ୟା ଶୁଖୁଆ ପୋଡ଼ାରେ ଯିବା– ଅନେକ ଦିନର ପୁଣ୍ୟ ସାମାନ୍ୟ ପାପ ଦ୍ୱାରା ନଷ୍ଟ ହୋଇଯାଏ ।

ବହଳିଆ ମୁହଁ– ନିର୍ଲଜ୍ଜ ।

ବଗ ପାଣି ପିଇ ଧଳା– ଅଭିଜାତ ବଂଶର ଲୋକ ଅଭାବରେ ଥାଇ ମଧ୍ୟ ବଂଶଗୌରବ ରଖି ଚଳିବାକୁ ଚେଷ୍ଟା କରନ୍ତି ।

ବଚନେନ କିଂ ?– କଥାରେ ସହାନୁଭୂତି ଜଣାଇବା ପାଇଁ ଅଣ୍ଟାରୁ ପଇସା ଖର୍ଚ୍ଚ କରିବାକୁ ପଡ଼େନାହିଁ ।

ବାହା ସରିଗଲେ ବେଦି ମୁହଁ ପୋଡ଼ା– ବିବାହ ପାଇଁ ବେଦିର ଆବଶ୍ୟକତା ଥାଏ, ବିବାହ ଶେଷ ହୋଇଗଲେ ବେଦିର ଆଉ ଆବଶ୍ୟକତା ନଥାଏ ।

ବିଷ କୁମ୍ଭଂ ପୟୋମୁଖଂ– ମୁହଁରେ ମିଠାକଥା, ମାତ୍ର ଅନ୍ତରରେ ବିଷ ।

ବାଘ ନଦେଖିଲେ ବିରାଡ଼ି ଦେଖି– ଦୁଇଜଣଙ୍କ ମଧ୍ୟରେ ଅତ୍ୟନ୍ତ ସାମଞ୍ଜସ୍ୟ ଥିଲେ ଏପରି କୁହାଯାଏ ।

ବାଘ ବକ୍ରି ଏକା ତୁଠରେ ପାଣି ପିଇବା– କୌଣସି ଶକ୍ତିଶାଳୀ ତୃତୀୟ ପକ୍ଷ ନିକଟରେ ପରସ୍ପରର ଶତ୍ରୁ ଥିବା ଜୀବ ଭୟରେ ନୀରବ ରହେ ।

ବ୍ରାହ୍ମଣ ବରଷା, ବଢ଼ି, ଦକ୍ଷିଣା ପାଇଲେ ଯାଆନ୍ତି ଛାଡ଼ି । (ଆପ୍ତ ବାକ୍ୟ)

ବନ ପୋଡ଼ିଗଲେ ସମସ୍ତେ ଜାଣନ୍ତି, ମନ ପୋଡୁଥିଲେ କେହି ଜାଣନ୍ତି ନାହିଁ ।

ବୁଲ୍‌ବୁଲ୍‌କୁ ପାଚିଲା କଦଳୀ ଦେଖେଇବା– ପ୍ରଲୋଭିତ କରିବାର ଚେଷ୍ଟା ।

ବାପ ଥିବା ପୁଅ ସଭାରେ ହାରେ ନା– ବାପ ବଞ୍ଚିଥିବା ଯାଏ ପୁଅ ନିରାପଦରେ ରହେ ।

ବାଟରେ ଦେଖିଲେ କମାର,ଲୁହା ପଜାଇ ଦିଅ ଆମର– ଅକସ୍ମାତ୍ ବାଟରେ ଦେଖାହୋଇଥିବା ଲୋକଠାରୁ କାର୍ଯ୍ୟ ଆଦାୟର ଚେଷ୍ଟା ।

ବୁଡ଼ିଗଲା ଗୋଛ ତଳକୁ ତଳକୁ– ଥରେ ଅସତ୍ ମାର୍ଗକୁ ଗଲେ ମଣିଷ ବହୁତ ତଳକୁ ଚାଲିଯାଏ ।

ବାଉଁଶ ଫୁଲିଲେ ମରେ-ମଣିଷ ବୁଲିଲେ ମରେ ।

ବୁଭୁକ୍ଷିତ କିଂ ନ କରୋତି ପାପମ୍– ପେଟ ପୋଡ଼ିଗଲେ ମଣିଷ ପାପପୁଣ୍ୟ ବିଚାର କରେନାହିଁ ।

ବିଛାମନ୍ତ୍ର ନ ଜାଣି ସାପ ଗାତରେ ହାତ ପୂରେଇବା– ଛୋଟ ସୂତ୍ର ନଜାଣି ବଡ଼କାମରେ ହାତଦେବା ।

ବିରାଡ଼ି ଛିଙ୍କିବା– ଅଶୁଭ ସୂଚନା ଯୋଗୁଁ କାମରେ ନ ଆଗେଇବା ।

ବାପପୁଅ ଦୁହେଁ ରାତି ଅନିଦ୍ରା, ମୁଗୁରା ଗାଣ୍ଡି ମେଲା– ସତର୍କତା ଅଭାବରୁ କଠିନ ପରିଶ୍ରମ କରି ମଧ୍ୟ ସୁଫଳ ନ ମିଳିବା ।

ବେଙ୍ଗ ପେଟରେ ଘିଅ ହଜମ ହୁଏ ନାହିଁ– ଉତ୍ତମ ସ୍ୱାସ୍ଥ୍ୟ ନଥିଲେ ଗରିଷ୍ଠ ଭୋଜନ ହଜମ ହୁଏନାହିଁ ।

ବିରୁଡ଼ି ବସା ହଲାଇବା– ବିପଜ୍ଜନକ କାମରେ ହାତ ଦେବା ।

ବାଟରେ ପୁଅ ବେଇ ଡାଆଣୀକୁ ଭୟ– ସବୁକଥା ପଦାରେ ପଡ଼ିଥିବା ବେଳେ ଲୁଚାଇବା ଭଳ ।

ବାଘ ଘରେ ମିରିଗ ନାଚ– ବଳବାନ୍ ଲୋକର ଅନୁପସ୍ଥିତିରେ ଦୁର୍ବଳ ଲୋକଙ୍କ ଲୋକଙ୍କ ମାମଲତକାରି ।

ବାଆକୁ ବତା– ସାମାନ୍ୟ ଧରଣର ପ୍ରତିକାର ବ୍ୟବସ୍ଥା ।

ବୁଝି ବିଚାରି କାର୍ଯ୍ୟକଲେ ପ୍ରମାଦ ନ ପଡ଼ଇ ଭଲେ– ବିଚାର କରି କାମ କଲେ ବିପଦ ଦୂରରେ ରହେ ।

ବିନା ଯୁଦ୍ଧେ ସୂଚ୍ୟଗ୍ର ମେଦିନୀ ତ୍ୟାଗ ନ କରିବା– ବିନା ବିବାଦରେ କଳହ ସମାଧାନ ନ କରିବା ।

ବିଲୁଆ ବିଚାର– ମୂଲ୍ୟହୀନ ଆଲୋଚନା ।

ବଂଶମରା ଡାହୁକ– କୁଳାଙ୍ଗାର ।

ବକ ଧ୍ୟାନ– ଏକାଗ୍ରତା

ବାଟୀଏ ଚଷିଲେ ନାଆଁ ପଡ଼େ, ବାଟରେ ହଗିଲେ ନାଆଁ ପଡ଼େ– ଭଲକାମ କଲେ ଯଶ ହୁଏ, ମନ୍ଦ କାମ କଲେ ଅପଖ୍ୟାତି ହୁଏ ।

ବାର ଦୁଆର ଶୁଙ୍ଘି ପିଣ୍ଡା ହେବା– ଅଭାବରେ ପଡ଼ିବା ।

ବୁଲେଇ ବିକିଲେ ମାଣିକ ଭାଣ୍ଡ– ନିଜ ସପକ୍ଷରେ କହି ଉପହାସିତ ହେବା ।

ବାଡ଼ ଫସଲକୁ ଖାଇବା– ରକ୍ଷକ ଭକ୍ଷକ ପାଲଟିବା ।

ବିନାଶକାଳେ ବିପରୀତ ବୁଦ୍ଧି– ବେଳ ଖରାପ ପଡ଼ିଲେ ଭୁଲବାଟ ଦିଶେ ।

ବାହାସ୍ଫୋଟ ମାରିବା– ଆସ୍ଫାଳନ କରିବା ।

ବିଧିର ବିଧାନ କେ କରିବ ଆନ– ଯାହା ଅବଧାରିତ ତାହା ନିଶ୍ଚୟ ଘଟିବ ।

ବହୁ ଆଡ଼ମ୍ବରେ ଲଘୁକ୍ରିୟା– ବହୁତ ଦେଖାଇ କିଛି ନଦେବା ।

ବାର ଭାଇ ଆଖଡ଼ା– ବିଭିନ୍ନ ଲୋକ ଗୋଟିଏ କଥାରେ ମାମଲତି କରିବା ।

ବାହା ହୋଇ ନାହିଁ ବୋଲି କଅଣ ବରଯାତ୍ରୀରେ ଯାଇ ନାହିଁ ?

ବେଡ଼ି ଉପରେ କୋରଡ଼ା ମାଡ଼– ଦଣ୍ଡ ଉପରେ ଅଧିକ ଦଣ୍ଡ ।

ବାଢ଼ିଲା ଭାତକୁ ଭରସା ନାହିଁ– ମୃତ୍ୟୁ ଯେକୌଣସି ମୁହୂର୍ତ୍ତରେ ଆସିପାରେ ।

ବହୁଲୋକରେ ମୂଷା ମରେନାହିଁ– ଗୋଟିଏ କାମରେ ବହୁଲୋକ ଲାଗିବା ଅନୁଚିତ ।

ବୋଝ ଉପରେ ନଳିତା ବିଡ଼ା– ସମସ୍ୟା ଉପରେ ନୂଆ ସମସ୍ୟା ଲଦିବା ।

ବୃଦ୍ଧସ୍ୟ ତରୁଣୀ ଭାର୍ଯ୍ୟା– ଅଯୋଗ୍ୟ ଲୋକ ପାଖରେ ଦାମି ପଦାର୍ଥ ଲାଭ ଅପେକ୍ଷା କ୍ଷତିକରେ ।

ବାୟା ଚଢ଼େଇ କି ଯାଏ-ନା-ବାଆକଲେ ବସା ଦେହଲୁଥାଏ– କ୍ଷତିର ଆଶଙ୍କା ନକରି ନିଶ୍ଚିନ୍ତ ରହିବା ।

## ଭ

ଭସ୍ମାସୁର– ଯାହାଙ୍କର କୃପା ଲାଭ କରି ଜୀବନରେ ଉନ୍ନତି ଘଟିଛି,ତାଙ୍କରି ସର୍ବନାଶ କରିବାକୁ ଚେଷ୍ଟା କରିବା ।

ଭଗାରି ହସେଇବା– ନିଜର ମନ୍ଦ କାର୍ଯ୍ୟଦ୍ୱାରା ଶତ୍ରୁକୁ ସୁଯୋଗ ଦେବା ।

ଭିନେ ହେଲା ଭାଇ ଭଗାରି ପଣକୁ ସରି ନୁହେଁ– ଆପଣା ଭାଇ ଭିନେ ହୋଇଗଲେ ତିକ୍ତତା ଏତେ ବଢ଼ିଯାଏ ଯେ ପରସ୍ପରକୁ କେହି ସାହାଯ୍ୟ କରନ୍ତି ନାହିଁ ।

ଭଣ୍ଡାରୀ ଦେଖିଲେ ଆଣ୍ଠୁରୁ ନଖ କଅଁଳେ– ଦରକାରୀ ଲୋକଠୁ କାମ ଆଦାୟ କରିବା ।

ଭାଙ୍ଗିଯିବ ପଛେ ନଇଁବ ନାହିଁ– ଅପମାନ ସହିବା ଅପେକ୍ଷା ମୃତ୍ୟୁ ଶ୍ରେୟସ୍କର ।

ଭାତ ହାଣ୍ଡିରୁ ଗୋଟାଏ ଚିପାଯାଏ– ଅଳ୍ପ କଥାରୁ ପରୀକ୍ଷା କରାଯାଏ ।

ଭେଳା ବୁଡ଼ିବା– ସର୍ବନାଶ ଘଟିବା ।

ଭୋକିଲା ଲୋକ କୌଣସି ଉପଦେଶ ଶୁଣେ ନାହିଁ– କ୍ଷୁଧା ବିଚାର ବୁଦ୍ଧି ନଷ୍ଟକରେ ।

ଭିକ ଚାଉଳରେ କଣା ଅକଣା କିଏ ପଚାରେ–ଭିକ୍ଷା ଜିନିଷରେ ଭଲମନ୍ଦ ବିଚାର ନ ଥାଏ ।

ଭୀମର ବଳ କୁନ୍ତିକୁ ଜଣା– ମା ପୁଅର ଦୋଷ ଦୁର୍ବଳତା ଜାଣେ ।

ଭୁକିଲା କୁକୁର କାମୁଡ଼େ ନାହିଁ– ପାଟି କରୁଥିବା ଲୋକ ଭୟଙ୍କର ନୁହେଁ ।

ଭୋକ ବେଳେ ଆମ୍ବିଳା ଆମ୍ବ ସୁଆଦ– ଭୋକ ବେଳେ ସବୁ ଭଲ ଲାଗେ ।

ଭେକ ଥିଲେ ଭିକ ମିଳେ– ପୋଷାକ ବ୍ୟକ୍ତିତ୍ୱକୁ ପ୍ରଭାବିତ କରେ ।

ଭଦ୍ର ଚୋର– ଭଦ୍ରଲୋକ ପରି ଦିଶୁଥିବା ଚୋର ।

ଭାବକୁ ନିକଟ, ଅଭାବକୁ ଦୂର– ପ୍ରେମ ସମସ୍ତଙ୍କୁ ଆପଣାର କରେ ।

ଭିକ ଦେବେ ନାହିଁ-ଥାଳ ଭାଙ୍ଗିଦେବେ– ସତ୍‌କର୍ମରେ ସାହାଯ୍ୟ କରିବା ପରିବର୍ତ୍ତେ ବିରୋଧ କରିବା ।

ଭାଗ୍ୟଂ ଫଳତି ସର୍ବତ୍ର, ନଚ ବିଦ୍ୟା,ନ ଚ ପୌରୁଷ– ଭାଗ୍ୟ ହିଁ ସବୁ ଘଟାଇଥାଏ ।

ଭୁଆଁ ବୁଲେଇବା– ଯଥାର୍ଥ ପଥ ନ ଦେଖାଇ ଅଯଥା ଶ୍ରମ କରାଇବା ।

ଭୁରୁଡ଼ ମାରିବା– ଦର୍ପର ସହିତ ମିଛ କହିବା ।

ଭୁଷ ପୂରେଇବା– ଗଣ୍ଡଗୋଳ ସୃଷ୍ଟି କରିବା ।

## ମ

ମଦ ଘଡ଼ା, କାମ ସରିଲେ ଗଡ଼ଗଡ଼ା– କାମ ଥିବା ପର୍ଯ୍ୟନ୍ତ ଆଦର, କାମ ସରିଗଲେ କେହି ପଚାରନ୍ତି ନାହିଁ ।

ମାଛ ତେଲରେ ମାଛ ଭାଜିବା– ନିଜ ହାତରୁ କିଛି ଖରଚ ନକରି ଉପରେ ଉପରେ କାମ କରିନେବା ।

ମାଡ଼ୁଆ ନ ଥାଇ ଗୁହାରିଆ– ଅତ୍ୟାଚାରିତ ଲୋକ ଅଭିଯୋଗ ନଆଣି ତା' ପକ୍ଷରୁ ଆଉ କେହି ଅଭିଯୋଗ କରିବା ।

ମଞ୍ଚାରୁ ପଡ଼ି ମାମୁଁ ମଲା-ମୋତେ ତ' ଦଇବ ରଖିଲା– ଯାହା ଅବଧାରିତ ତାହା ଘଟିଥାଏ ।

ମୁହଁ ଛିଞ୍ଚାଡ଼ିବା– ବିରକ୍ତ ହେବା

ମୁହଁ ମୋଡ଼ିବା– କୌଣସି ବିଷୟକୁ ନାପସନ୍ଦ କରିବା ।

ମାନିଲେ ଦେବତା, ନମାନିଲେ ପଥର– ବିଶ୍ୱାସେ ମିଳଇ ହରି ତର୍କେ ବହୁଦୂର ।

ମୁଣ୍ଡ ଝାଳ ତୁଣ୍ଡରେ ମାରିବା– କଠିନ ପରିଶ୍ରମ କରିବା ।

ମନ କହୁଛି ଘୋଡ଼ା ଚଢ଼ିବାକୁ, କରମ କହୁଛି ବିଆଳି ବାଛିବାକୁ– ସମସ୍ତଙ୍କର ଇଚ୍ଛା ଅଧିକରୁ ଅଧିକ ସଂପଦର ଅଧିକାରୀ ହେବାକୁ, ମାତ୍ର ଉଦ୍‌ଯୋଗ ନକଲେ କିଛି ହୁଏ ନାହିଁ । ଉଦ୍‌ଯୋଗ କଲେ ମଧ୍ୟ ଭାଗ୍ୟ ଅନୁସାରେ ଫଳ ଫଳିଥାଏ ।

ମାରେ ସିପାହୀ, ନାମ ସର୍ଦ୍ଦାର– ଜଣେ କାମ କରେ, ମାତ୍ର ଅନ୍ୟଜଣେ ନାଆଁ ନିଏ ।

ମଲୁ ଖୋଜୁଥିଲା ଯାହା, ଦଇବ ବତେଇଲା ତାହା– ଆଶା ପୂରଣ ହେବା ।

ମୂଳୁ ମାଇଲେ ଯିବ ସରି, ଦେବଙ୍କ ସଙ୍ଗେ କିମ୍ପା କଳି (ଭାଗବତ ବାଣୀ)– ମୂଳୋତ୍ପାଟନ ହିଁ ଭବିଷ୍ୟତ ପାଇଁ ନିରାପଦ ।

ମୂଳରୁ ମାଇପ ନାହିଁ, ପୁଅ ନାଁ ଗୋପାଳିଆ– ବହୁ ପୂର୍ବରୁ ଦୂର ଭବିଷ୍ୟତ କଥା ଭାବିବା ।

ମାଛ ଖାଇବ ଇଲିଶି, ଚାକିରି କରିବ ପୁଲିସ– ସାଧାରଣତଃ ପୋଲିସବାଲା କ୍ଷମତାର ଅପବ୍ୟବହାର କରି ଅନ୍ୟାୟ କଲେ ମଧ୍ୟ କେହି ସେମାନଙ୍କର କିଛି କରିପାରନ୍ତିନାହିଁ ।

ମନ କୁଣ୍ଢେମୋଟ ହେବା– ଗର୍ବ ଓ ଗୌରବରେ ଫୁଲି ଉଠିବା ।

ମଇଁଷି ଶିଙ୍ଗ ଫଟା, ଯୁଝିଲା ବେଳକୁ ଗୋଟା– ନିଜ ନିଜ ଭିତରେ ଯେତେ ବିଭେଦ ଥିଲେ ମଧ୍ୟ ଶତ୍ରୁ ବିରୁଦ୍ଧରେ ଏକତାବଦ୍ଧ ହୋଇ ଲଢ଼ିବା ।

ମଣି-କାଞ୍ଚନ ସଂଯୋଗ– ଦୁଇଜଣ ଉତ୍ତମ ବ୍ୟକ୍ତିଙ୍କ ମିଳନ ।

ମେରୀ ମୂଳ ଧାନ– ଅସଲ ମୂଳ ଲୋକ ।

ମାର୍‌ ତାଳି, ଉଠାଥାଳି– ଠାକୁରଙ୍କ ପାଖରେ ଚଟ୍‌ପଟ୍‌ ଭୋଗ ଲଗେଇ ଦେବା ।

ମାଗି ଆଣିଲା ତିଅଣ ସୁଡୁକାଏ– ପରଠାରୁ ମାଗି ଆଣିବା ଜିନିଷର ପରିମାଣ ନିଶ୍ଚୟ କମ୍‌ ହେବ ।

ମହାକାଳଫଳ– ବାହାର ଦେଖିବାକୁ ସୁନ୍ଦର, ଭିତର ପୋଡ଼ା ଅଙ୍ଗାର ।

ମଧୁ ତିଷ୍ଠତି ଜିହ୍ୱାଗ୍ରେ– ବାହାରକୁ ମିଠା କଥା କହି ଅନ୍ତରରେ ବିଷ ରଖିବା ।

ମାଛିକୁ ମର କହେ ନାହିଁ– ଅତି ସରଳ ନିରୀହ ଲୋକ ।

ମାଳିକୁ ଛେଳି ଅଡୁଆ– ମାଳି ଲଗାଇଥିବା ଚାରାଗଛକୁ ଛେଳି ଖାଇଯାଏ । ତେଣୁ ଛେଳି ମାଳିକୁ ଅସୁବିଧାରେ ପକାଏ ।(ବୃତ୍ତିବିରୋଧୀ କାର୍ଯ୍ୟ)

ମହରଗରୁ ଯାଇ କାନ୍ତାରରେ ପଡ଼ିବା– ଯନ୍ତ୍ରଣାରୁ ରକ୍ଷା ପାଇବାକୁ ଯାଇ ଅଧିକ ଯନ୍ତ୍ରଣା ଭୋଗିବା ।

ମୋତେ ଯେତେ ମାଠିବୁ ମାଠ୍, ମୁଁ ସେହି ଦରପୋଡ଼ା କାଠ୍– ଯେତେ କହିଲେ ମଧ୍ୟ ପ୍ରକୃତି ବଦଳେ ନାହିଁ ।

ମାଙ୍କଡ଼ ହାତରେ ଶାଳଗ୍ରାମ, ନଚାଇ ନଚାଇ ନିଏ ପ୍ରାଣ– ଅପାତ୍ରରେ ଦାନର ମୂଲ୍ୟ ରହେନା ।

ମଣିଷ ପ୍ରକୃତି ମଳେ ତୁଟେ, ଘୁଷୁରି ପ୍ରକୃତି ପଙ୍କରେ ଲୋଟେ ।

ମୋ କଥା ଏତିକି, ଫୁଲ ଫୁଟେ କେତକୀ

ମୋକଥାଟି ସରିଲା, ଫୁଲ ଗଛଟି ମରିଲା – ଶେଷ ହେବା ।

ମନ ମୋହର ନିଜ ଗୁରୁ, ଉଦ୍ଧବ କେତେ ତୁ ପଚାରୁ

ମେଣ୍ଢା ଧୋଉ ଧୋଉ ନିର୍ବାଳ– ଆବଶ୍ୟକତାଠାରୁ ଅଧିକ ଯତ୍ନ ସର୍ବନାଶର କାରଣ ।

ମାଆ ଧାନ କୁଟି ପୁଅ ନାଗର– ମାଆ ଧାନ କୁଟି ପେଟ ପୋଷେ, ଅଥଚ ପୁଅର ଫେସନର ସୀମା ନାହିଁ ।

ମାଆ-ଝିଅ ଦୁହେଁ ଦେଉଳେ ପଶିଲେ-ଯେ ଯାହାର ସୁଖ ଯେ ଯାହାର ମନାସିଲେ– ମାଆ ନିଜ ସ୍ୱାମୀ-ପୁତ୍ରର ଶୁଭ କାମନା କରେ-ଝିଅ ତା' ସ୍ୱାମୀ-ପୁତ୍ର କାମନା କରେ ।

ମହାଦେବଙ୍କ ବାହନକୁ ପୂଜା କରିବା- ବାସୁଆବଳଦକୁ ଅତିକ୍ରମ କଲେ ମହାଦେବଙ୍କ ଦର୍ଶନ ମିଳେ । ସେହିପରି ଚେଲାକୁ ସନ୍ତୁଷ୍ଟ କଲେ ଯାଇ ଗୁରୁ ବା ନେତାଙ୍କୁ ଭେଟି ହୁଏ ।

ମରଦ୍‌କା ବାତ୍, ହାତୀକା ଦାନ୍ତ– ସୁପୁରୁଷ ନିଜ ପ୍ରତିଶ୍ରୁତିରେ ଦୃଢ଼ ରହେ ।

ମାର୍ ମାର୍ ଭଣ୍ଡାରିଆକୁ ମାର୍– ଦୋଷ କରିଥିବା ଲୋକ ଖସିଯାଏ, ତଳିଆ କର୍ମଚାରୀ ଦଣ୍ଡ ଭୋଗେ ।

ମାର୍ ନା ମୁଁ ମଲିଣି– ନିରୀହ ଦୁର୍ବଳ ଜୀବ ବଳବାନ୍ ନିକଟରେ ମଲାଭଳି ଛଳନା କରେ ।

ମୁଖ୍‌ମେଁ ରାମ ରାମ, ବଗଲମେଁ ଛୁରୀ– କପଟତା ।

ମନ ସ୍ଥିର କଲେ ଗଡ଼ିଆ ଗଙ୍ଗା– ମନକୁ ପବିତ୍ର ରଖିବା ଆବଶ୍ୟକ ।

ମୁଁ ତ ଖାଉଛି ମୋର ଭାତ, ତୋର କାହିଁକି ଗାଲରେ ହାତ ?– ଈର୍ଷା ।

ମୌନଂ ସମ୍ମତି ଲକ୍ଷଣଂ– ନୀରବ ରହିବା ଅର୍ଥ ପ୍ରକାରାନ୍ତରେ ସମର୍ଥନ କରିବା ।

ମୁନିନାଂ ଚ ମତିଭ୍ରମଃ– ଜ୍ଞାନୀ ଲୋକର ମଧ୍ୟ ଭୁଲ୍ ହୁଏ ।

ମାଛ ଦେବ, ମାତ୍ର ପୋଖରୀ ଦେଖାଇବ ନାହିଁ– ମୂଳସୂତ୍ରଟି ସର୍ବଦା ଗୋପନୀୟ ରଖିବା ଉଚିତ୍ ।

ମାରୁଥିବେ ମହାପାତ୍ରେ ଚାହିଁଥିବେ ଢଳକା– ଚତୁର ଲୋକ କୌଶଳକ୍ରମେ ସବୁ
ଆତ୍ମସାତ୍ କରିବା ।

ମୁହଁ ହାଣ୍ଡି କରିବା– ରାଗ କରିବା ।

ମୁହଁ ଶୁଖାଇବା– ଦୁଃଖିତ ଭାବ ।

ମୁଣ୍ଡ ଗୁଞ୍ଜିବା– ଆଶ୍ରୟ ନେବା ।

ମୁହଁ ଫୁଲେଇବା– ମନଦୁଃଖ ଓ ଅସନ୍ତୋଷର ଭାବ ।

ମନେ ମନେ ମୁଆଁ ଖାଇବା– ଅଯଥା ଉଜ୍ଜ୍ୱଳ ଭବିଷ୍ୟତ କାମନା କରିବା ।

ମାଇପ ଆଗରେ ପାଇକ ପଣିଆ– ଦୁର୍ବଳ ନିକଟରେ ବାହୁସ୍ଫୋଟ ମାରିବା ।

ମହାଦେବର ଖାଇ ସହଦେବର ଖାଇବା– କୃତଘ୍ନତା ।

ମାଇପବୋଲା– ନିଜ ସ୍ତ୍ରୀ କଥାରେ ଚାଲିବା ପୁରୁଷ ।

ମୋର ନିଶ ନଥିଲେ-ମୋ। ବଳିଆ ଭାଇର ଅଛି– ଦରିଦ୍ର ଓ ଦୁର୍ବଳ ଲୋକର
ଆତ୍ମସନ୍ତୋଷ ।

ମାଡ଼ ଘରେ ଗୁଆ ପକାଇବା– ଦଣ୍ଡ ମିଳିବା ଭଳି କାର୍ଯ୍ୟ କରିବା ।

ମିଆଁ ବିବି ରାଜି ତ କ୍ୟା କରେଗା କାଜି ?– ପ୍ରେମିକ ପ୍ରେମିକା ବିବାହ ପାଇଁ ଇଚ୍ଛୁକ
ଥିବାବେଳେ ଆଇନ କିଛି କରିପାରେନା । ବା ପକ୍ଷ ଏକମତ ଥିଲେ ବିଚାରକର
ଆବଶ୍ୟକତା ନାହିଁ ।

## ଯ

ଯଥାଡ଼େ ବର୍ଷା ସିଆଡ଼େ ଛତା– ଭଲମନ୍ଦ ବିଚାର ନକରି ସ୍ୱାର୍ଥପାଇଁ ଯେକୌଣସି
କଥାକୁ ସମର୍ଥନ କରିବା ।

ଯାଚି କଲ୍ୟାଣ ମାଗି ଓଳଗି– ବଳେ ବଳେ କାହାକୁ ଆଶୀର୍ବାଦ କରିବା କିମ୍ବା କାହାଠାରୁ
ସମ୍ମାନ ମାଗିବା ଉଚିତ ନୁହେଁ ।

ଯତ୍ ପଠିତଂ ତତ୍ ଗୁରବେ ନିବେଦିତମ୍– ପଢ଼ିଥିବା ପାଠ ଭୁଲିଯିବା ।

ଯେଷାକୁ ତେଷା ହାରାମ୍ ଜାଦାକୁ ଟାଙ୍ଗିଆପସା– ଦୁଷ୍ଟଲୋକ ପ୍ରତି କୋହଳ ନ ହୋଇ
ଉଚିତ ଶାସ୍ତି ବିଧାନ କରିବା ।

ଯେନ କେନ ପ୍ରକାରେଣ– ଉଚିତ୍ ହେଉ ବା ଅନୁଚିତ ହେଉ, କୌଶଳରେ କାର୍ଯ୍ୟ
ହାସଲ କରିବା ।

ଯାହାକୁ ରଖିବେ ଅନନ୍ତ, କି କରିପାରେ ବଳବନ୍ତ– ରଖେ ହରି ତ'ମାରେ କିଏ ?

ଯେ ପାଞ୍ଚେ ପରର ମନ୍ଦ, ତା'ମନ୍ଦ ପାଞ୍ଚନ୍ତି ଗୋବିନ୍ଦ– ଅନ୍ୟର ଅମଙ୍ଗଳ ଚିନ୍ତା କରୁଥିବା ବ୍ୟକ୍ତି ନିଜର କ୍ଷତି ଘଟାଏ ।

ଯାହାର କାନ ଅଛି ତା'ର ବୋଲି ନାହିଁ– ସମସ୍ତଙ୍କୁ ସବୁକଥା ମିଳେ ନାହିଁ ।

ଯାହା ବାପ ଚଢ଼ିଥାଏ ଘୋଡ଼ା, ସେ ପୁଅ ଚଢ଼େ ଥୋଡ଼ା ଥୋଡ଼ା– ପୁଅ ଉତ୍ତରାଧିକାର ସୂତ୍ରରେ ବାପର କିଛି ଗୁଣ ରଖିଥାଏ ।

ଯୋଗୀ ଥାଳରେ ଉଆ ଉଷୁନା– ମାଗନ୍ତା ଲୋକକୁ ଯାହା ମିଳିଲା ତାହା ଖୁସିରେ ଗ୍ରହଣ କରେ ।

ଯାହା ପୁଅକୁ ସାପ କାମୁଡ଼ିଥାଏ ସେଭଳି ମାଆ ପାଳ ଦଉଡ଼ା ଦେଖିଲେ ଡରେ– ଭୟରେ ଭ୍ରମ ଉପୁଜେ ।

ଯେତିକି ଚୂନାକୁ ସେତିକି ପିଠା– ସୀମିତ ପରିମାଣ ।

ଯାହାର ମନ ଯେଡ଼େ, ତାହାର ପ୍ରଭୁ ସେଡ଼େ–ମନ ଅନୁସାରେ ଫଳ ।

ଯେ ପକ୍ଷୀ ଉଡ଼େ ଯେଦେଦୂର, ସେ ଜାଣେ ତହିଁର ବେଭାର– ଯେ ଯେତେ ଗମିଷ୍ଠ, ସେ ସେତେ ଜାଣିଛି ।

ଯା' ବାହା ତା'ର ମନେ ନାହିଁ, ସାହି ପଡ଼ିଶାକୁ ନିଦ ନାହିଁ– ପାଖ ପଡ଼ିଶା ଲୋକେ ବ୍ୟସ୍ତ ଥିବାବେଳେ କାର୍ଯ୍ୟ ହେଉଥିବା ଲୋକର ନିଶ୍ଚିନ୍ତଭାବ ।

ଯେମିତି ଠାକୁରକୁ ସେମିତି ପୂଜା, ବାଲିଗରଡ଼ାକୁ ଚାଉଳଭଜା– ବ୍ୟକ୍ତିତ୍ୱ ଅନୁସାରେ ସମ୍ମାନ ମିଳିଥାଏ ।

ଯାହା ମନ ଯାହାଠି ରସେ, ପୋକ ଶୁଙ୍ଘା ଫୁଲେ ଭଅଁର ବସେ– ଯାହାକୁ ଯେମିତି ଭଲଲାଗେ, ସେ ସେମିତି କରେ ।

ଯାହା ନ ଦେଖିବ ବେନି ନୟନେ, ପରତେ ନ ଯିବ ଗୁରୁବଚନେ– ନିଜେ ନଦେଖିଲେ ଅନ୍ୟ କଥାରେ ବିଶ୍ୱାସ କରିବା ଠିକ୍ ନୁହେଁ ।

ଯେ ଦେଶେ ଯାଇ ସେ ଫଳ ଖାଇ– ପରିସ୍ଥିତି ସହିତ ଖାପଖୁଆଇ ଚଳିବା ।

ଯେବେ ପାଇଥିବୁ ଘଇତା ବୁକୁ, ସଜ ହୋଇଥିବୁ ବାପ ଘରକୁ– ସୁବିଧା ଓ ସୁଯୋଗର ସଦୁପଯୋଗ କରିବା ।

ଯେଡ଼େ ବାଉଁଶ ସେଡ଼େ ପୋଳ– ଆୟ ଅନୁପାତରେ ବ୍ୟୟ ।

ଯୋଡ଼ାକୁ ଘୋଡ଼ା ସରି ନୁହେଁ– ମିଳିତଭାବେ କାମ ବ୍ୟକ୍ତିଗତ କାମଠାରୁ ଭଲ ।

ଯବ୍‌ତକ୍ ଶାଁସା ତବ୍‌ତକ୍ ଆଶା– ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ଲୋଭ ଥାଏ ।

ଯାହାର ଲୁଣ ଖାଇବ, ତାହାର ଗୁଣ ଗାଇବ– କୃତଜ୍ଞତା ।

ଯିଏ ପଖାଳ ଖାଇଛି ସିଏ ତବତ ଖାଉ, ଯିଏ କିଛି ନଖାଇଛି ସିଏ ଗାଧୋଇ ଯାଉ– ତେଲିଆ ମୁଣ୍ଡରେ ତେଲ ।

# ର

ରଙ୍କଣି ପାଇଛି ଇଲିଶି, କଣ୍ଡାମଣ୍ଡା କରି ଗିଳୁଛି– ନପାଇଲା ଲୋକ ଥରେ ପାଇଗଲେ ଭଲମନ୍ଦ ବାରେ ନାହିଁ ।

ରାଜ-ଯୋଟକ– ସବୁ ଦିଗରୁ ଶୁଭଦାୟକ ମିଳନ ।

ରାଜ୍ୟର ପାପ ରଜା ମୁଣ୍ଡରେ– ରାଜା ପାପ ନିରୋଧ କରିବା ଉଚିତ, ଅନ୍ୟଥା ସେହିଁ ପାପ ପାଇଁ ଦାୟୀ ହେବେ ।

ରାଣ୍ଡେ ସେଇ ଘଇତା କରନ୍ତି, ବଅଁଶ ବୁଡ଼େଇ ମାରନ୍ତି–ପ୍ରଥମେ ନ ବୁଝି ବିଶୃଙ୍ଖଳା ସୃଷ୍ଟି କରିବା ପରେ ବୁଝିସାରି ସେଇ କଥାକୁ ସମର୍ଥନ କରିବା ।

ରାଣ୍ଡକୁ ନଘା ନାହିଁ କି ଷଣ୍ଢକୁ ପଘା ନାହିଁ– ବିଧବାଲୋକ ମୁରବୀହୀନ ଓ ଦୁଃସାହସୀ ହୋଇଯାଏ । (ନିୟନ୍ତ୍ରଣହୀନ ଅବସ୍ଥା)

ରାଣ୍ଡୀପୁଅ ଅନନ୍ତା ସାଜିବା– କାହାକୁ ଖାତର ନ କରିବା ।

ରଜାଙ୍କ ପାଖରେ ପୁଅ, ରାଣୀଙ୍କ ପାଖରେ ଝୁଅ– ଯାହାଙ୍କ ପାଖରେ ଯେପରି ଆବଶ୍ୟକ ସେପରି ରୂପ ଧାରଣ କରି ସ୍ୱାର୍ଥ ହାସଲ କରିବା ।

ରୁକୁଣା ରଥ ଅଣଲେଉଟା– ଥରେ ଗଲେ ଫେରିଆସେ ନାହିଁ ।

ରାଣ୍ଡର କାହିଁକି ଆଇଁଷ ଚିନ୍ତା ?– ଅନଧିକାର ଚର୍ଚ୍ଚା ।

ରାମର ଖାଇ ରାବଣର ଗାଇବା– କୃତଘ୍ନତାର ଚିହ୍ନ ।

ରାଣ୍ଡ ଧମକାଣ– ମୂଲ୍ୟହୀନ ଭୟ ପ୍ରଦର୍ଶନ ।

ରକ୍ଷକ ଭକ୍ଷକ ପାଲଟିବା– ଆଇନ-ଶୃଙ୍ଖଳା ରକ୍ଷା କରିବା ଦାୟିତ୍ୱରେ ଥିବା ଲୋକ ନିଜେ ଅନ୍ୟାୟ କରିବା ।

ରଜା ବୁଝିଲେ ଖୁମ୍ବଆଳୁ– ବିଚାରକର୍ତ୍ତା ଠିକ୍‌କଥା ନବୁଝିବା ।

ରାନ୍ଧୁଣୀ ଯଦି ପକ୍‌କା, ଲୁଣ ନପକା– କୁଶଳୀକର୍ମୀ ପାଇଁ ଉପାଦାନ ହେୟ ।

## ଲ

ଲାଉ ଚୋର, କଖାରୁ ଚୋର, ଚୋରଉ ଚୋରଉ ବଡ଼ ଚୋର— ମନ୍ଦ ପ୍ରକୃତି ଧୀରେ ଧୀରେ ବଢ଼ିଯାଏ ।

ଲାଙ୍ଗୁଳହୀନ ଶୃଗାଳ— ନିଜେ ଭୋଗୁଥିବା ଦୁର୍ଦ୍ଦଶା ଅନ୍ୟମାନେ ଭୋଗନ୍ତୁ ବୋଲି ଇଚ୍ଛା କରିବା ।

ଲୁଚିଛି-ନା-ଗୋଡ଼ ଦିଓଟି ଦିଶୁଛି— ସବୁକଥା ଲୁଚାଇ ରଖିବାକୁ ଚେଷ୍ଟାକଲେ ମଧ୍ୟ କେତେକ କଥା ପଦାରେ ପଡ଼ିଯାଏ ।

ଲେମ୍ବୁ ଅତି ଚିପୁଡ଼ିଲେ ପିତା— ସବୁକଥାର ଅତିବେଶୀ ଖରାପ ।

ଲଙ୍କାରେ ହରି ଶବ୍ଦ— କୌଣସି ବ୍ୟକ୍ତିର ଶତ୍ରୁ ଶିବିରରେ ପ୍ରଶଂସା ।

ଲମ୍ବ ପଣତ ସବୁ ଆଡ଼କୁ ପାଏ— ଆବଶ୍ୟକତାଠାରୁ ଟିକିଏ ବେଶୀ ଆୟୋଜନ କରିଥିଲେ ନିଅଣ୍ଟର ଭୟ ନଥାଏ ।

ଲୁଣ ବସ୍ତା ପାଣିରେ ପଡ଼ିବା— କ୍ଷତିର ସମ୍ମୁଖୀନ ହେବା ।

ଲେଖୁ ଲେଖୁ କରଣ— ଅଭ୍ୟାସ ଦକ୍ଷତା ଆଣିଦିଏ ।

ଲୁହାର ଛାତି— ଦୃଢ଼ ମନ ।

ଲୁଣ ଖାଏ ହାଣ୍ଡି, ଚିନ୍ତା ଖାଏ ଗଣ୍ଡି, କେଳା ଖାଏ ଭଣ୍ଡି, ରାଜା ଖାଏ ତଣ୍ଡି ।(କେତୋଟି ଅତି ପରିଚିତ ସତ୍ୟ ।

## ଶ

ଶ୍ୱାନ ଶୟନ— ଖୁଡ଼୍‌କିନା ଶବ୍ଦରେ ଚେଇଁ ଉଠିବା ।

ଶୁଙ୍ଘି ଶୁଙ୍ଘି କହିଦେଲା ସୈନ୍ଧବ ଲୁଣ— ପରୀକ୍ଷା ନିରୀକ୍ଷା ପରେ ଠିକ୍ କଥା କହି ନ ପାରିବା ।

ଶଠେ ଶାଠ୍ୟମ୍ ସମାଚରେତ୍– ଶଠଲୋକ ପ୍ରତି ଶଠତାପୂର୍ଣ୍ଣ ବ୍ୟବହାର ଉଚିତ୍ ଅଟେ ।

ଶିରରେ କପଡ଼ା, ପାଆରେ ତେଲ-ବଇଦ ସଙ୍ଗତେ କରିବ ଗେଲ– (ସୁସ୍ଥ ରହିବା ପାଇଁ ପୁରାତନ ଉପଦେଶ) ।

ଶଗଡ଼ ପଛେ କିଆବଣକୁ ଯାଉ ଭଡ଼ା ଛାଡୁଛି କିଏ ?– ଦଇବ ଦୁର୍ଘଟଣାକୁ କମ୍ପାନୀ ଦାୟୀ ନୁହେଁ ।

ଶୋଇଲା ପୁଅର ଭାଗ ନାହିଁ– ତତ୍ପରହୀନ ଲୋକର ଭାଗ ବୁଡ଼ିଯାଏ ।

ଶାଶୁର ଦିନେକୁ ବୋହୂର ଦିନେ– ସୁସଂପର୍କ ନରହିଲେ କେହି ଅପମାନ ଭୋଗିବାରୁ ବାଦ୍ ଯାଆନ୍ତି ନାହିଁ ।

ଶାଶୁ ମାରୁଥାଏ ବୋହୂକୁ, ବୋହୂ ସବାଖାଇ କାହାକୁ ମାରିବ, ମାରୁଥାଏ ଚୁଲ୍ଲୀ ମୁହଁକୁ– ନୂଆହୋଇ ଆସିଥିବା ବୋହୂ ଶାଶୁଙ୍କ ନିର୍ଯ୍ୟାତନାରେ କିଛି କରି ନପାରି ଅନ୍ୟଠାରେ ରାଗ ଛିଣ୍ଡାଏ ।

ଶାଳଗ୍ରାମର ବସିବା ଶୋଇବା ସମାନ– ଯାହା କଲେ ମଧ୍ୟ ଏକା ପ୍ରକାର ।

ଶିଳ-ଶିଳପୁତା ଗଗନେ ଉଡୁଛି ଶିମିଳି ତୁଳା କହୁଛି ମୋତେ ରଖ୍– ବଡ଼ ବଡ଼ଙ୍କ କଥା ରହୁ ନଥିଲାବେଳେ ସାନସାନଙ୍କ ପ୍ରଶ୍ନ ଉଠେ ନାହିଁ ।

ଶାଗ ଖିଆକୁ ପେଜ ଖିଆ ଦେଖିପାରେନାହିଁ– ଗରିବ ଆଉ ଜଣେ ଗରିବକୁ ମଧ୍ୟ ଈର୍ଷ୍ୟା କରେ ।

ଶିକାରକେ ଓ୍ୱକ୍ତ କୁଭା ଟଟ୍ଟି ବୈଠା– ଅସଲ ବେଳେ ଦେଖା ନ ମିଳିବା ।

ଶ୍ରୋତା ବକତା କେହି ନାହିଁ, ରୋଦନ କରୁ କାହିଁ ପାଇଁ– ଶୁଣିବାକୁ କେହି ନଥିଲେ ପ୍ରାର୍ଥନା କରି କିଛି ଲାଭ ନାହିଁ ।

ଶଙ୍ଖେ ବସ୍ତ୍ରେ କନ୍ୟାଦାନ– ଅଭାବଯୋଗୁଁ ଶାଢ଼ୀ ଶଙ୍ଖା ଦେଇ ଝିଅର ବିବାହ ଦେବା ।

ଶୁଣ୍ଢିର ସାକ୍ଷୀ ମାତାଲ– ସମାନ ସ୍ୱାର୍ଥ ଓ ପ୍ରବୃତ୍ତିର ଲୋକ ଜଣେ ଅନ୍ୟ ଜଣକୁ ସାହାଯ୍ୟ କରେ ।

ଶ୍ରୀ ଅକ୍ଷର ବିବର୍ଜିତ– ନିରକ୍ଷର ବ୍ୟକ୍ତି ।

ଶାଗ ଅଲଣା, ମାଛରେ ଲୁଣ, ତା'ହେଲେ ଜାଣିବ ରାନ୍ଧୁଣୀ ଗୁଣ– ଅଲଣା ଶାଗ ଓ ଲୁଣିଆ ମାଛ ତରକାରୀ ଭଲ ।

ଶାଶୁ ମଲା, ବୋହୂ ବେଇଲା, ଯେଉଁ ତିନିକୁ ସେଇତିନ୍– ସବୁ କ୍ଷେତ୍ରରେ ସମାନ୍ ଖର୍ଚ୍ଚହେବା ।

# ଷ

ଷାଠିଏ ହାତ ବାଉଁଶ ଆସି କଣିରେ ପରିଣତ ହେବା– ଏକଦା ଧନାଢ୍ୟ ବ୍ୟକ୍ତିର ଦରିଦ୍ର ଅବସ୍ଥା ।

ଷଣ୍ଢାମାର୍କା– ହୃଷ୍ଟପୁଷ୍ଟ ବଳବାନ୍ ।

ଷାଠିଏ ମହଣ ଘିଅ ହେବ-ନା-ରାଧା ନାଚିବ– ଅତି ଉଚ୍ଚ ଆଶା କଲେ ଶେଷକୁ କିଛି ଫଳ ହୁଏନାହିଁ ।

ଷଣ୍ଢକୁ ନାଲିକନା– ଜଣକୁ କ୍ରୋଧାନ୍ୱିତ କରିବାଭଳି କାର୍ଯ୍ୟ ।

ଷଣ୍ଢକୁ ହଳ ବୁଲେଇବା– ଅସାଧ ସାଧନ କରିବା ।

# ସ

ସାନ ଥିଲେ ପଚାରି, ବଡ଼ ଥିଲେ ବିଚାରି– ଏକ ପୁରାତନ ଉପଦେଶ ।

ସାଉଁଟିବା କାଣ୍ଡ ଯୁଦ୍ଧକୁ ପାଏ ନାହିଁ– ଯୁଦ୍ଧପାଇଁ ପୂର୍ବ ପ୍ରସ୍ତୁତି ଲୋଡ଼ା, ତାହା ନକରି ଯୁଦ୍ଧ ସମୟରେ ଅସ୍ତ୍ରଶସ୍ତ୍ର ଯୋଗାଡ଼ କରିବାକୁ ଚେଷ୍ଟା ।

ସଇଁଖ ସୁନ୍ଦର ଭେଣ୍ଡିଆଟିଏ, ହାତଗୋଡ଼ ନାହିଁ ଖଣ୍ଡିଆଟିଏ– ପରିଶ୍ରମ କାତର ଯୁବକ ।

ସାତପାଞ୍ଚର ଲାଠି ଜଣକ ପାଇଁ ବୋଝ– ବାଣ୍ଟିନେଇ କାମ କରିଗଲେ ସମସ୍ତଙ୍କ କାମ ହାଲୁକା ହୋଇଯାଏ ।

ସିଧା ଆଙ୍ଗୁଠିରେ ଘିଅ ବାହାରେ ନାହିଁ– ଏକେବାରେ ସରଳ ନହୋଇ ଟିକିଏ କୂଟନୀତି ପ୍ରୟୋଗ କଲେ ସମସ୍ୟା ସମାଧାନ ହୋଇଥାଏ ।

ସଞ୍ଜେ ଫୁଟି ସକାଳେ ଯାଆ, ଜହ୍ନିଫୁଲପରି ଆୟୁଷ ପାଆ– ଏକ ଅଭିଶାପ ।

ସଂସାର ଭିତରେ କଲେ ଘର, ଅଧେ ଆପଣା ଅଧେ ପର– ସମସ୍ତଙ୍କୁ ଅବିଶ୍ୱାସ କଲେ ଚଳିବ ନାହିଁ କିମ୍ୱା ଅତି ସରଳ ହୋଇ ସମସ୍ତଙ୍କୁ ବିଶ୍ୱାସ କରିବା ଉଚିତ ନୁହେଁ ।

ସବୁଜ ବତୀ ଦେଖେଇବା– କାର୍ଯ୍ୟ କରିଯିବା ପାଇଁ ଅନୁମତି ଦେଇଦେବା ।

ସହସ୍ର ହାଣ୍ଡିକୁ ଏକା ଠେଙ୍ଗା– ଶତ ଶତ ଦୁର୍ବଳ ବ୍ୟକ୍ତିଙ୍କୁ ଜଣେ ଶକ୍ତିଶାଳୀ ବ୍ୟକ୍ତି ଜବତ୍ କରିପାରେ ।

ସାପ ମରିବ ନାହିଁ କି ବାଡ଼ି ଭାଙ୍ଗିବ ନାହିଁ– ଉଭୟ ପକ୍ଷକୁ ସୁହାଇବାଭଳି କଥା ।

ସଞ୍ଜେ ସକାଳେ ଯେ ହଗି ଯାଏ, ତା'ପଇସା କି ବଇଦ ଖାଏ ?– ଦୁଇବେଳା କୋଷ୍ଠ ପରିଷ୍କାର ହେଉଥିବା ଲୋକର ସ୍ୱାସ୍ଥ୍ୟ ଭଲ ରହେ ।

ସାତ କଥାରେ ସତୀ ଭୁଲେ– ବେଶୀ ଲୋକ କହିବା କିମ୍ବା ଏକା କଥାକୁ ବାରମ୍ବାର କହିବା ଦ୍ୱାରା ବିଶ୍ୱାସ ଆସିଥାଏ ।

ସରଗକୁ ନିଶୁଣି ନାହିଁ କି ବଡ଼ଲୋକଙ୍କୁ ଉତ୍ତର ନାହିଁ – ବଡ଼ଲୋକ ପାଖରେ ସାନ-ଲୋକର କଥା ରହେନାହିଁ । ତେଣୁ କିଛି କହିବା ନିରର୍ଥକ ।

ସମୁଦ୍ରକୁ ଶଙ୍ଖେ ପଣା– ଅତ୍ୟନ୍ତ ସାମାନ୍ୟ ଦାନ ।

ସୁଦାମାର ଖୁଦଭଜା– ଗରିବର ସାମାନ୍ୟ ପଦାର୍ଥ ଆଦର-ସ୍ନେହ ବୋଳା ହୋଇଥିବାରୁ ଭଲଲାଗେ ।

ସକଳ ତୀର୍ଥ ତୋ ଚରଣେ, ବଦ୍ରିକା ଯିବି କି କାରଣେ– ମୁଖ୍ୟକୁ ଛାଡ଼ି ଗୌଣକୁ ଆଶ୍ରୟ କରିବା ଉଚିତ ନୁହେଁ ।

ସଫରୀ ଫରଫରାୟତେ– ଦଣ୍ଡିକିରୀ ମାଛ କୂଳକୁ ଆସି ନିଜର ଉପସ୍ଥିତି ଜଣାଇଦୁଏ, ମାତ୍ର ବଡ଼ ମାଛ ଗଭୀର ଜଳରେ ଥାଏ । ସେହିପରି ଅଳ୍ପଜ୍ଞାନ ଥିବା ଏବଂ ଅଳ୍ପଧନ ଥିବା ଲୋକ ନିଜର ଚାତର ଦେଖାଇ ହୁଅନ୍ତି ।

ସର୍ବନାଶ ସମୁତ୍ପନ୍ନେ ଅର୍ଦ୍ଧଂ ତ୍ୟଜନ୍ତି ପଣ୍ଡିତଃ– ସର୍ବନାଶ ହେବାବେଳେ ବୁଦ୍ଧିମାନ୍ ଲୋକ ଅଧାଅଧିରେ ସନ୍ତୁଷ୍ଟ ହୁଅନ୍ତି ।

ସାତକାଣ୍ଡ ରାମାୟଣ ଶୁଣିବାପରେ ସୀତା ମାଈ କି ଅଣ୍ଡିରା ପଚାରିବା– ବହୁ ଚର୍ଚ୍ଚାପରେ ବିଷୟ ସମ୍ବନ୍ଧରେ କିଛି ଧାରଣା ନ ଆସିବା ।

ସାତ ଚକଟା ପୋଲୁହ ଘଣ୍ଟା ମୋ ଆଗରେ ହଲଉଛୁ ବନିଶି କଣ୍ଟା– କେତେ ଧଡ଼ମଡ଼ି ସହିଥିବା ଲୋକକୁ ସାମାନ୍ୟ ଲୋଭ ଦେଖାଇବାର ଅପଚେଷ୍ଟା ।

ସୂତା ମାଜିଲେ ସରୁ, କଥା ମାଜିଲେ ମୋଟ– କଥା ଉପରେ କଥା କହି ଚାଲିଲେ ଅଧିକ ତିକ୍ତତା ବଢ଼େ ।

ସବ୍‌ରାତ୍‌କେ ଗାଛମେଁ ମେଓ୍ୱା ଫଲ୍‌ତା ହେ– ତରବର ନହୋଇ ଧୈର୍ଯ୍ୟର ସହିତ ଅପେକ୍ଷା କଲେ ସୁଫଳ ମିଳିଥାଏ ।

ସଂପଦ ବେଳେ ସର୍ବେ ସଖା, ବିପଦେ ନଦିଅନ୍ତି ଦେଖା– ଧନ ଥିବା ସମୟରେ ସମସ୍ତେ ବନ୍ଧୁ ।

ସବ୍‌ସେ ଚୁପ୍ ଭଲା– ନୀରବତା ଅବଲମ୍ବନ ଦ୍ୱନ୍ଦ୍ୱ ଭିତରକୁ ଟାଣିନିଏ ନାହିଁ ।

ସଂଶୟାତ୍ମା ବିନଶ୍ୟତି– ଦୃଢ଼ତା ନଥିବା ଲୋକର କାର୍ଯ୍ୟନାଶ ଘଟେ ।

ସବୁ ଚୋରଯାକ କେଦାରେଶ୍ୱରରେ ରୁଣ୍ଡ– ଏକାପ୍ରକୃତିର ଲୋକ ଏକତ୍ର ହେବା ।

ସୁଖ ସ୍ୱପ୍ନ ଦେଖିବା– କାମ ନକରି ସୁଖ କଳ୍ପନା କରିବା ।

ସାରୁ ଭିତରେ ମାରୁ– ଭଲ ମଧ୍ୟରେ ମନ୍ଦ ।

ସେକାଳ ପଖାଳ ଗଲାଣି– ସମୟ ବଦଳିଯିବା ।

ସେ ଅଯୋଧ୍ୟା ନାହିଁ କି ସେ ରାମଚନ୍ଦ୍ର ନାହାନ୍ତି– ଅତୀତର ଗୌରବ ଲୋପ ପାଇବା ।

ସବୁଦିନେ ନାହିଁ ଲୋ ଦୂତୀ, ଚାନ୍ଦିନୀ ରାତିର ଭାବ ପୀରତି– ଦୁନିଆ ପରିବର୍ତ୍ତନଶୀଳ ।

ସେବା-କାର୍ପଣ୍ୟ-ଭକ୍ତିବଳେ, କିବା ଅସାଧ୍ୟ ମହୀ ତଳେ ?– ସେବା, ବିନୟ ଓ ଭକ୍ତି ସିଦ୍ଧିର ମୂଳକଥା ।

ସୂତା ଖିଅରେ ଝୁଲିବା– ଯେକୌଣସି ମୁହୂର୍ତ୍ତରେ ଛିଡ଼ି ପଡ଼ିବା ସମ୍ଭାବନା ।

## ହ

ହାତୀ ଚାଲିଯାଏ କୁକୁର ଭୁକୁଥାଏ– ଆତ୍ମବିଶ୍ୱାସ ଥିବା ଶକ୍ତିମାନ୍ ବ୍ୟକ୍ତି ଦୁର୍ବଳ ଲୋକର ଧମକକୁ ଖାତିର୍ କରେନାହିଁ ।

ହାତୀ ଗଳିଯାଏ ପିମ୍ପୁଡ଼ି ନଗଳେ– କେଉଁଠି ଅମାପ ଖର୍ଚ୍ଚ ହୋଇଯାଏ, ଅଥଚ କେଉଁଠି ସାମାନ୍ୟ ଖର୍ଚ୍ଚକୁ ବନ୍ଦ କରାଯାଏ ।

ହଜିଲା ବଳଦ ଖୋଜିଲା ଠାଇଁ– ମନେ ମନେ ଖୋଜୁଥିବା ଲୋକ ସହିତ ଭେଟ ହୋଇଯିବା ।

ହାତର ଲକ୍ଷ୍ମୀ ଗୋଡ଼ରେ ଠେଲିବା– ମିଳୁଥିବା ସୁଯୋଗ ବା ଧନକୁ ହତାଦର କରିବା ।

ହଗିଲା ଗାଣ୍ଡିରେ ଶେଉଳ ମାଡ଼ିବସିବା– ଭାଗ୍ୟବଳରେ ଅକସ୍ମାତ୍ କିଛି ଧନ ସଂପଦ ପାଇଯିବା ।

ହାତରୁ ଖସିଲେ ଅଣହାତ– ହାତରୁ ଚାଲିଯିବା ଟେକା,ବାଟୁଳି ବା ଶର କେଉଁଠି ଯାଇ ବାଜିବ କହିହେବ ନାହିଁ ।

ହଗିବ ନାହିଁ କି ବାଟ ଛାଡ଼ିବ ନାହିଁ– ନିଜେ କରିବ ନାହିଁ କି ଅନ୍ୟକୁ କରିବାକୁ ଦେବ ନାହିଁ ।

ହଜିଲେ ଛିଣ୍ଡାକନା ଖୋଜିଲେ ମାଠ– ହଜିଥିବା ଜିନିଷର ମୂଲ୍ୟ ଯେତେ କମ୍ ହେଲେ ମଧ୍ୟ ତାକୁ ମୂଲ୍ୟବାନ୍ କୁହାଯାଏ ।

ହାତରେ ନଥାଇ ଧନ, ପୁଅ ବାହାକରି ମନ– ହାତରେ ପଇସା ନଥାଇ କୌଣସି ଏକ ବଡ଼ କାମ କରିବାକୁ ଇଚ୍ଛା କରିବା ।

ହାତେ ମାପି ଚାଖଣ୍ଡେ ଚାଲିବା– ପ୍ରତି ପଦକ୍ଷେପରେ ଖୁବ୍ ସତର୍କ ରହିବା ।

ହାଟରେ ପଡ଼ି ଦାଣ୍ଡରେ ଗଡ଼ଗଡ଼ଉଛି– କାହାରି ପାଖରେ ଅଛପା ନାହିଁ ।

ହରଡ଼ ଘଣାରେ ପଡ଼ିବା– ବିଷମ ଅସୁବିଧାରେ ପଡ଼ିବା ।

ହାତ ଅଳସେ ନିଶ ବଙ୍କା– ଅଳସୁଆ ଲୋକ ନିଶରେ ହାତ ମାର୍ ନ ଥିବାରୁ ନିଶ ସିଧା ନ ରହି ବଙ୍କା ହୋଇଯାଏ ।(ଆଳସ୍ୟ ହିଁ କ୍ଷତିର କାରଣ)

ହାତରେ ଶଙ୍ଖା ଦର୍ପଣ ଦେଖା– ପିନ୍ଧିଥିବା ହାତ ଶଙ୍ଖାରେ ମୁହଁ ଦେଖି ହୁଏ, ଦର୍ପଣ ଆବଶ୍ୟକ ହୁଏ ନାହିଁ ।

ହାତ ପଶୁପଶୁ ବାହା ପଶେ– ଅଳ୍ପରୁ ଆରମ୍ଭ କଲେ ପଛକୁ ବେଶୀ ହୁଏ ।

ହଲିଲା ପାଣିକୁ ଗୋଡ଼ ବଢ଼ାଏ ନାହିଁ– ବଡ଼ ନିରୀହ ।

ହାତୀ ପାଡ଼ିବ ପାଡ଼ିବ ଫୁସ୍– ବିଶେଷ କିଛି ଆଶା କରୁଥିବା ବେଳେ ନିରାଶ ହେବା ।

ହାତୀ ସୁନା କଳସ ଢ଼ାଳିବା– ଭାଗ୍ୟବଳରେ ଉଚ୍ଚ ପଦ ଲାଭ ।

ହାତୀ ନେ, ଘୋଡ଼ା ନେ, ମୋ ପେଁକାଳି ବଜେଇ ଦେ– ଲୋଭ ଦେଖେଇବା ।

ହାଟ ମଝିରେ ବ୍ରହ୍ମଜ୍ଞାନ– ଗୁପ୍ତକଥା ପଦାରେ କହିବା ।

ହାତରେ ନମାରି ଭାତରେ ମାରିବା– ପରୋକ୍ଷଭାବେ ଦଣ୍ଡଦେବା ।

ହେଣ୍ଡିମାରିବା– କୃତିତ୍ୱ ଆଶାରେ ଔଦ୍ଧତ୍ୟ ପ୍ରକାଶ କରିବା ।

ହଂସା ଉଡ଼ିଯିବା– ପ୍ରବଳ କ୍ଷୁଧା ।

ହଲାପଟା କରିବା– ଅସୁବିଧାରେ ପକାଇବା ।

ହାତ ଗୋଡ଼ କଥା କହିବା– ଆଚରଣ ଦୁଷ୍ଟ ବୋଲି ଜଣାଇବା ।

ହାଡ଼ ଜଳିବା– ବିରକ୍ତିକର ଲାଗିବା ।

ହନୁମାନ ଲାଞ୍ଜରେ ନିଆଁ– ଯୋଗ୍ୟତମ ବ୍ୟକ୍ତି କାର୍ଯ୍ୟକ୍ଷେତ୍ରକୁ ଆସିବା ।

## କ୍ଷ

କ୍ଷୀର-ନୀର ସଂପର୍କ– ଅତ୍ୟନ୍ତ ଘନିଷ୍ଠତା ।

କ୍ଷୀର ସଙ୍ଗତେ ଖାର– ଭଲ ଜିନିଷ ସହିତ ମନ୍ଦ ଜିନିଷ ମିଶାଇବା ।

କ୍ଷୀରରେ ଧୋଇଲେ ଖଣ୍ଡରେ ମୋହିଲେ ନିମ୍ବ କି ମଧୁର ହୋଇବ, ଯେତେ ପରକାରେ ବୁଝାଇ କହିଲେ ପର କି ଆପଣା ହୋଇବ ?– ପ୍ରକୃତି ବଦଳେ ନାହିଁ ।

କ୍ଷୁଦ୍ରକୀଟ ଉଇ ଅଳ୍ପ ଅଳ୍ପ କରି ରଚଇ ବଲ୍ମୀକ ଘର– ଅଳ୍ପ ଅଳ୍ପ କରି ଆରମ୍ଭ କଲେ ସମୟକ୍ରମେ ତାହା ବିଶାଳ ରୂପ ଧାରଣକରେ ।

କ୍ଷୀଣା ଜନା ନିଷ୍କରୁଣା ଭବନ୍ତି– ପତଳା ଓ ରୋଗୀ ଲୋକେ ନିର୍ଦ୍ଦୟ ହୁଅନ୍ତି ।

କ୍ଷୁଦ୍ର ସର୍ପର ବିଷ ଉତ୍କଟତର– ଆକାରରେ ଛୋଟ କିନ୍ତୁ ଗୁଣରେ ବଡ଼ ।



# ଦ୍ୱିତୀୟ ଅଧ୍ୟାୟ

## ଲୋକଗୀତି ଚୟନ

୧. ଭାଇ ବାହା ହେଲେ ଭାଉଜ ରାଣୀ
ଲୋକ ପଚାରିଲେ କହିବି ମୁଁ ରାଜା ଭଉଣୀ ।

୨. ହାତୀ ବୁଲେ ଗାଁ ଗାଁ, ଯା'ର ହାତୀ ତା'ର ନାଁ ।

୩. ଛିଆଲୋ ଛତ୍ର ମେଘ ବରଷିଲେ କେତେ ଖାଆନ୍ତୁ ।

୪. କାହାର ପୁଷମାସ, କାହାର ସର୍ବନାଶ ।

୫. ଦଇବ ଦଉଡ଼ି ମଣିଷ ଗାଇ, ଯେଣିକି ଟାଣଇ ତେଣିକି ଯାଇ ।

୬. ମଲୁ ଖୋଜୁଥିଲା କାକର ପାଣି
ବଇଦ କହିଲା ''ଦିଅ ତୋରାଣି ।''

୭. ରଙ୍କ ପାଟିକୁ ପାନ ଗଲା, ପାନ କହିଲା ମୋ ଜୀବନ ଗଲା ।

୮. ଯାହାକୁ ଯିଏ, ବିରିକି ଚାଉଳ ଡିଙ୍ଗେଇ ଦିଏ ।

୯. ମୁଣ୍ଡରେ ପଗଡ଼ି ପାଦରେ ତେଲ
ଦଇବ ସଙ୍ଗରେ ଖେଳୁଥା ଗେଲ ।

୧୦. ଆଲୋ ସଖି, ଆପଣା ମହତ ଆପେ ରଖି ।

୧୧. ଆଲୋ ମଉସା, ଜଡ଼ ପଇସା ।

୧୨. ଖାଇବା କଥା ମୂଳ କଲା
କାହିଁକି ଅଇଲୁ ବୋଇଲା । (କପଟ ପଶା)

୧୩. ହାଣ୍ଡିରେ ଖାଏ
ଗୋଡ଼ରେ ପଡ଼ିଲେ ଗାଧେଇ ଯାଏ ।

୧୪. ରଙ୍କ ପାଇଛି ଇଲିଶି
ତାକୁ କଣ୍ଟା ମଣ୍ଟା କରି ଗିଳୁଛି ।

୧୫. ଯେ ପକ୍ଷୀ ଉଡ଼େ ଯେତେ ଦୂର
ସେ ଜାଣେ ତହିଁର ବେଭାର ।

୧୬. ମହୀରେ ଥିବ ଯେତେ ଦିନ
ଆନନ୍ଦ କରୁଥିବ ମନ ।

୧୭. ଓଦେଇ ମାକୁ ଖୋଦେଇ ସାହା
ଅରକ୍ଷିତକୁ ଦଇବ ସାହା ।

୧୮. ମାନିଲେ ଠାକୁର
ନ ମାନିଲେ ପଥର

୧୯. ନଙ୍ଗ ପଡ଼ିଥିବ ଯେତିକିବେଳେ
ବିଧାଏ ମାରିବ ସେତିକିବେଳେ ।

୨୦. ବୁଦ୍ଧି ଆସେ ନାହିଁ ଘରକୁ
ବତେଇ ଦେଉଛି ପରକୁ ।

୨୧. ମହାଦେବଙ୍କର ଖାଇବ
ସହଦେବଙ୍କର ଗାଇବ ।

୨୨. କର୍ଣ୍ଣ ମଲେ ପାଞ୍ଚ
ଅର୍ଜ୍ଜୁନ ମଲେ ପାଞ୍ଚ ।

୨୩. ଗଛର ଛାଇ, ମଣିଷର ହାଇ
ପଡ଼ିବା ଜାଗାଟା ଉଧାଏ ନାହିଁ ।

୨୪. ରାଜା ଖାଏ ତଣ୍ଡି, କେଳା ଖାଏ ଭଣ୍ଡି ।

୨୫. ଚିନ୍ତା ଖାଏ ଗଣ୍ଡି, ଲୁଣ ହାଏ ହାଣ୍ଡି ।

୨୬. ନାଆକ, ବ୍ରାହ୍ମଣ ବରଷା ବଢ଼ି,
ଦକ୍ଷିଣା ପାଇଲେ ଯାଆନ୍ତି ଛାଡ଼ି ।

୨୭. କବାଟ କଉଡ଼ି ତାଟି ଖାଇ ଯିବ ।

୨୮. ଚାଲି ନଜାଣି ବାଟର ଦୋଷ ।

୨୯. ତହ ତହ ଆମ୍ବିଳ ଶୀତଳ ଭଜା ।

୩୦. ଆପେ ବଣିଜ ପୁତେ ଚାଷ ।

୩୧. ଅଜାତିକି ବଣିଜ ଅଡୁଆ ।

୩୨. ଆଗଚ଼ଲା, ପଛ ପେଲା
ପର ଗାଇ ଦୁହାଁ ବାହୁରୀ ମଲା ।
୩୩. ଆଉ ସବୁ ପାଠ ଚାଳରେ ଖୋସ
ଅମରକୋଷକୁ ନିଠେଇ ଘୋଷ ।
୩୪. କବି ତୁଣ୍ଡ, ମେଣ୍ଢା ମୁଣ୍ଡ ।
୩୫. ଦିନେ ନାହିଁ, କାଲେ ନାହିଁ ଗହ୍ଲା ପୁନେଇଁକି ମାଇଁ ମାଇଁ ।
୩୬. ମନରେ ନାହିଁକି ମାଳରେ ନାହିଁ
ହରିଙ୍କି ଭଜିଲେ ପାଇବୁ କାହିଁ ?
୩୭. ଗାଈକି ମାଇଲେ ମଲି
ଗାଈ ମାଇଲେ ମଲି ।
୩୮. ମଇଁଷି ଶିଙ୍ଗ ଫଟା
ଢୁଝିଲା ବେଳକୁ ଗୋଟା ।
୩୯. ମୁଁ ମରୁଥାଏ ନାନୀ ପାଇଁ
ନାନୀ ଆଖିରେ ଲୁହ ଟୋପେ ନାହିଁ ।
୪୦. ଗଲି ଆଇଲି
ଯାହା ଦେଖିଥିଲି ତାହା କହିଲି ।
୪୧. ଘର ଢିଙ୍କି କୁମ୍ଭୀର ।
୪୨. ଯାହାର ମନ ଯେତେ
ତା'ର ପ୍ରଭୁ ତେଡ଼େ ।
୪୩. ଯୋଡ଼ାକୁ ଘୋଡ଼ା ସରି ନୁହେଁ ।
୪୪. ଆରେ ଚଇତା
ହାତ ଗୋଡ଼ ଥିଲେ ପୁଅ ଘଇତା ।
୪୫. ମାଆ ବିହାଣ ମୋଟେ ନାହିଁ
ଗାଁ ଯାକ ଭଉଣୀ ଢୋଇଁ ।
୪୬. କୁହାଳିଆ ତୁଣ୍ଡ
ଠକିଆ ଦିଆ ମୁଣ୍ଡ ।
୪୭. ଆପେ ବଣିଜ ପୁତେ ଚାଷ ।

୪୮. ପୁଷେ ଖଇ, ମାଘେ ଦହି
ଚଇତରେ ନିମ ଚକୁଳି ଖାଇ ।

୪୯. ଆଗେ ଚାନ୍ଦ ପଛେ ଚାନ୍ଦ
ତାକୁ ମଝି ଖୁଣ୍ଟରେ ବାନ୍ଧ ।

୫୦. ହଜିଲା ବଳଦ ଖୋଜିଲା ଠେଇଁ ।

୫୧. ଆପଣା ବସ୍ତ୍ର ପରକୁ ଦେଇ
ଶିବ ପଳାଇଲେ ଲଙ୍ଗଳା ହୋଇ ।

୫୨. ଆଇଲେ ପଣ୍ଡୁ ମଲେ ମଶା
ଫାଟୁଆ ଦେଲେ ମୁରୁକି ହସା ।

୫୩. ମୂଳକୁ ନଥା, ମୁକ୍ରୋଲୋଉଥା ।

୫୪. ଅକାଳ ବାଆଜି ସକଳେ ଦେଖା ।

୫୫. ରାନ୍ଧୁଣି ଯଦି ପକ୍କା, ଲୁଣ ନ ପକା ।

୫୬. ହାତ ଅରଜିଲେ ଦାନ୍ତ ଖାଇବ
ପର ଦେଉଥିଲେ ଉଭୋଉ ଥିବ ।

୫୭. କାନ୍ଦୁଥା, ଯା ଦେଉଥିଲେ ବାନ୍ଧୁଥା ।



## ତୃତୀୟ ଅଧ୍ୟାୟ

# କେତୋଟି ଓଡ଼ିଆ ଲୋକକଥାର ଇଂରେଜୀ ସମରୂପ

୧. ଚାଲି ନଜାଣି ବାଟର ଦୋଷ— A Bad workman quarrels with his tools.

୨. ଦେଖିଲେ କଥା ନକହେ ନ ଦେଖିଲେ କାନ୍ଦୁଥା— Absence makes the heart grow fonder.

୩. ଫଳେନ ପରିଚୟତେ— Actions speak louder than words.

୪. ପାପମନ ସର୍ବଥା ଶଙ୍କାକୁଳ— A guilty mind is always suspicious.

୫. ସବୁଜାନତା ମଣିଷ କୌଣସି କାମକୁ ଟାଣନୁହେଁ— A jack of all trades master of none.

୬. ମୋତେ ଯେତେ ମାଠିବୁ ମାଠ
ମୁଁ ସେହି ଦରପୋଡ଼ା କାଠ— A leopard never charges his spot.

୭. ସବୁ ସଡ଼କ ପୁରଷ୍ତମକୁ ଯାଏ— All roads lead to Rome.

୮. ଚକ୍ ଚକ୍ କରୁଥିବା ସବୁ ପଦାର୍ଥ ସୁନା ନୁହେଁ— All that glitters is not gold.

୯. ଶୁଣି ସାକ୍ଷୀ ମାତାଲ— A man is known from the company he keeps.

୧୦. ଅଳସୁଆ ମନ ଭୂତକୋଠି— An idle mind is in the devils workshop.

୧୧. କେଳା ହାଣ୍ଡିରେ କଳାପଡ଼େ ନାହିଁ— A rolling stone gather no moss.

୧୨. ଯଥା କର୍ମ ତଥା ଫଳ/ କର୍ମାନୁସାରେ ଫଳ— As a man makes his bed, so must he lie.

୧୩. ହାଇର ଭାଇ ଅଛି, ଛିଙ୍କର କେହି ନାହିଁ— Always victory finds a hundred fathers but defeat is an orphan.

୧୪. ମିଠା କଥାରେ ଶତ୍ରୁ ଢଳେ– A soft answer turns away wrath.

୧୫. ଦେଇଥିଲେ ପାଇ– As you sow, so you'll reap.

୧୬. ସବୁ ଚୋରଯାକ କେଦାର ଶରରେ ଭୁଣ୍ଡ– Birds of a feather flock together.

୧୭. ବିପଦ ସିନା ସେ ବୀରର ପରଖ– Calamity is a main true touch stone.

୧୮. ଦୁଃଖ ସବୁଦିନେ ରହେନା– If winter comes, can spring be far behind ?

୧୯. କେଉଟ ଧରେ ମାଛ ଖାଏ କଙ୍କଡ଼ା– He that makes shoes goes bare-foot.

୨୦. ଋଣଂକୃତ୍ୱା ଘୃତଂ ପିବେତ୍– Live now, pay later.

୨୧. ଚୋରଯାର ମୁଲକ ତା'ର– Might is right.

୨୨. ଅଭାବ ଉଦ୍ଭବର ଜନନୀ– Necessity is the mother of invention.

୨୩. ପାଶୁ ଦୂର ଦେଲେ ନପଡ଼େ ମନେ– Out of sight out of mind.

୨୪. ଲେଖୁ ଲେଖୁ କରଣ– Practice makes perfect.

୨୫. ଝିଣ୍ଟିକା ମାରି ବଣି ପୋଷିବା– Rob peter to pay Paul.

୨୬. କୌଣସି ବଡ଼ କାମ ଦିନକରେ ହୋଇ ନାହିଁ– Rome was not built in a day.

୨୭. ଧୀର ପାଣି ପଥର କାଟେ– Slow and steady wins the race.

୨୮. ଯେସାକୁ ତେସା– Tit for tat.

୨୯. ବେଶି ମଣିଷରେ ମୂଷା ମରେନି– Too many cook spoil the broth.

୩୦. ଏକତା ହିଁ ବଳ– Unity is strength.

୩୧. କର୍ମେ ଯିଏ ନର କର୍ମ ଏକା ତା'ର ଜୀବନର ମାନଦଣ୍ଡ– A man lives in deeds, not in years.

୩୨. ଯେ ଦେଶ ଯାଇ ସେ ଫଳଖାଇ– While in Rome, do as Romans do.

୩୩. ମହରଗରୁ ଯାଇ କାନ୍ତାରରେ ପଡ଼ିବା– To fall from the frying pan to fine.

୩୪. ଅକାଳେ ନିୟମ ନାସ୍ତି– Necessity knows no law.

୩୫. ଅର୍ଥ ସବୁ ଅନର୍ଥର ମୂଳ– Money is the root of all evils.

୩୬. କୁଳ କଳଙ୍କ– Black sheep.

୩୭. କଳିର ମଞ୍ଜି– Apple of discord.

୩୮. ଅତି ଭକ୍ତି ଚୋରର ଲକ୍ଷଣ– Excess of everything is bad.

୩୯. ଆୟ ଦେଖି ବ୍ୟୟ କରିବା– To cut, according to cloth.

୪୦. ଆକାଶ କଇଁଆ ଚିଲିକା ମାଛ– To build castle in the air.

୪୧. ଯଦ୍ ଧ୍ରୁବାଣି ପରିତେଜ୍ୟ– A bird in hand worth two in the bush.

୪୨. ଉପର କେଡ଼େ ସୁନ୍ଦର, ଭିତର ପୋଡ଼ା ଅଙ୍ଗାର– A wolf in lamb's clothing.

୪୩. ଏକ ହାତରେ କଳି ହୁଏନା– It takes two to make a quarrel.

୪୪. ଓଟ ମୁହଁରେ ଜୀରା– A drop in the ocean.

୪୫. କଙ୍କଡ଼ାକୁ ଗୋଳିପାଣି ସୁହାଏ– Fish in the troubled water.

୪୬. କାହାର ପୁଷ୍ଟ ମାସ କାହାର ସର୍ବନାଶ– One man's food another man's poison.

୪୭. କୁକୁର ଲାଙ୍ଗୁଡ଼ ସବୁଦିନେ ବଙ୍କା– Black will take no other hue.

୪୮. କାଳ ଆଗରେ ମୂଳା ଚୋବାଇବା– To fall flat.

୪୯. କାଉଁରିଆ କାଠି ଭାଙ୍ଗିଯିବ ସିନା ନଇଁବ ନାହିଁ– A man can be broken but can not be defeated. (Hemingway)

୫୦. ଗାଁ କନିଆ ସିଙ୍ଘାଣି ନାକି– A prophet is not honoured in his own land.

୫୧. ଉଦ୍ୟୋଗୀ ଜନ ଲକ୍ଷ୍ମୀ ନନ୍ଦନ ହୁଅଇ ସବୁକାଳେ– Fortune favours the brave.

୫୨. ଆପଣା ହସ୍ତେ ଜିହ୍ୱା ଛେଦି– To hoist with one's own petard.

୫୩. ଆଗତ ଚଢେଇକୁ ବେସର ବଟା– To count chicks before they are hatched.

୫୪. ଏକା ମାଘକେ ଶୀତ ଯାଏନା– One slip does not end misery.

୫୫. ନିରସ୍ତ ପାଦପ ଦେଶେ ଏରଣ୍ଡପି ଦ୍ରୁମାୟତେ/
ବାଉରୀ ସାହିରେ କଟାସ ମହାବଳ– A figure among ciphers.

୫୬. କଣ୍ଟାଦ୍ୱାରା କଣ୍ଟା କାଢ଼ିବା– To set a thief to catch a thief.

୫୭. ପାପଧନ ପ୍ରାୟଶ୍ଚିତ୍ତରେ ଯାଏ– Ill got, ill spent.

୫୮. କଟା ଘାରେ ଚୂନ ଦେବା– To add fuel to fire.

୫୯. ଖାଇବା ଘରର ପିଲା ରଙ୍କ– Plenty is the father of want.

୬୦. ଆପଣା ଢୋଲ ପିଟିବା– To beat one's own drum.

୬୧. ଦୁଃସମ୍ବାଦ ସହସ୍ର କୋଶ– Ill news runs a pace.

୬୨. ଚିହ୍ନା ବ୍ରାହ୍ମଣର ପଇତା ଲୋଡ଼ା ନାହିଁ– Good wine needs no bush.

୬୩. ତୁଳସୀ ଦୁଇ ପତ୍ରରୁ ବାସେ– Morning shows the day.

୬୪. ଗତସ୍ୟ ଶୋଚନା ନାସ୍ତି– Let by-gone, be by-gone.

୬୫. ଜୋର ଯାର ମୂଲକ ତାର– Might is right.

୬୬. ଚୋରି ହେଲାପରେ କବାଟ କିଳା/
ଠକିଲେ ଶିଖିବା– To luck the stable after the steed is stolen.

୬୭. ଜ୍ଞାନମେବ ଶକ୍ତି– Knowledge is power.

୬୮. ଗରଜିଲା ମେଘ ବରଷେ ନାହିଁ– An empty vessel sounds much.

୬୯. ଭୁକିଲା କୁକୁର କାମୁଡ଼େ ନାହିଁ– A barking dog seldom bites.

୭୦. ବିଷକୁମ୍ଭଂ ପୟୋମୁଖଃ– A honey tongue, a heart of gall.

୭୧. ଦୀପତଳେ ଅନ୍ଧାର– Nearer the church further from the heaven.

୭୨. ତେଲିଆ ମୁଣ୍ଡରେ ତେଲ– Carry coal to new castle.

୭୩. ତିଳକୁ ତାଳ କରିବା– To make a mountain of a mole-hill.

୭୪. ନାହିଁ ମାମୁଁ ଠାରୁ କଣା ମାମୁଁ ଭଲ– (i) Something is better than nothing.
(ii) Better late than never. (Shakespeare)

୭୫. ଦୁଃଖ ନଥାଇ ସୁଖ ନାହିଁ– There is no rose without thorn.

୭୬. ନିଆଁ ନଥାଇ ଧୂଆଁ ନାହିଁ– There is no smoke without fire.

୭୭. ନାନା ମୁନିଙ୍କ ନାନା ମତ– Doctors differ.

୭୮. ପୃଥିବୀ କ୍ଷଣ ଭଙ୍ଗୁର– There is many a slip between the cup and the lip.

୭୯. ପାଗ ବାନ୍ଧୁ ବାନ୍ଧୁ କଚେରୀ ବରଖାସ୍ତ– Much ado about nothing.

୮୦. ଦୁର୍ଯ୍ୟୋଗ ସପରିବାର ଆସେ– Misfortune never comes alone.

୮୧. କର୍ମାନୁସାରେ ଫଳ– As you sow, so you reap.

୮୨. ଇଚ୍ଛାଥିଲେ ବାଟ ଆପେ ଆପେ ଆସେ– Where there is a will there is a way.

୮୩. ବାହାପିଆକୁ ବିଶ୍ୱାସ ନାହିଁ– Put no faith in table bearers.

୮୪. ଭୋକବେଳେ ଆମ୍ବିଳା ଆମ୍ବ ମିଠା– Hunger is the best sauce.

୮୫. ରାତ୍ ଗୟି ବାତ୍ ଗୟି– Eaten bread is soon forgotten.

୮୬. ସମ୍ପଦବେଳେ ସର୍ବେ ସଖ୍ୟା– Friends are plenty when the purse is full.

୮୭. ବିପଦର ବନ୍ଧୁ ହିଁ ପ୍ରକୃତ ବନ୍ଧୁ– A friend is need, a friend in deed.

୮୮. କାନ୍ଧରେ ପଡ଼ିଲେ ବଳେଇ ଶିଖନ୍ତି– It is the place that shows the man.

୮୯. ଝଡ଼ରେ ଦୁବ ଘାସର କ୍ଷତି ହୁଏନା– A beggar can never be bankrupt.

୯୦. ଭେକ ଥିଲେ ଭିକ ମିଳେ– A polite dress invites welcome.

୯୧. ମଣିଷ ମାତ୍ରେ ଭୁଲ କରନ୍ତି– To err is human.

୯୨. କ୍ଷମା ଦୈବୀ ଗୁଣ– To forgive is divine.

୯୩. ନୀରବତା ସମ୍ମତିର ଲକ୍ଷଣ– Silence is consent.

୯୪. ଦିଘର କୁଣିଆ ଉପାସ– Everybody's business in no-body's business.

୯୫. ବିନା କଷ୍ଟରେ ଇଷ୍ଟ ମିଳେନା– There is no gain without pain.

୯୬. ସମୟ କାହାକୁ ଚାହିଁ ବସେନା– Time and tide wait for none.

୯୭. ଯାହାକୁ ରଖିବେ ଅନନ୍ତ– What god will, no frost can kill.

୯୮. ଛୋଟ ସାପର ବିଷ ବେଶି– A little pot is soon hot.

୯୯. ଯାହାର ଲୁଣ ଖାଅ ତାର ଗୁଣ ଗାଅ– Be true to the salt you eat.

୧୦୦. ହାତେ ମାପି ତାଖଣ୍ଡେ ଚାଲ– Look before you leap.

୧୦୧. ଯେମିତି ମଞ୍ଜି, ସେମିତି ଫଳ– Like father like son.

୧୦୨. ଲକ୍ଷ୍ମୀ ସଦା ଚଞ୍ଚଳା– Richess have wings.

୧୦୩. ଶୋଇଲା ପୁଅର ଭାଗ ନାହିଁ– A sleeping lion catches no deer.

୧୦୪. ଶସ୍ତାରୁ ଅବସ୍ଥା– Cheap and nasty.

୧୦୫. ବଡ଼ ବଡ଼ ଗଲେ ଫସର ଫାଟି– Fools rush in where angels fear to tread.

୧୦୬. ସ୍ୱଜାତି ପରହିଂସ୍ରକ– Two of a trade can never agree.

୧୦୭. ଏକା ଲାଉର ମଞ୍ଜି– Bird of same feather.

୧୦୮. ଏକା ଆଖି ଆଖି ନୁହେଁ– Two minds are better than two.

୧୦୯. ମାଟିର ମଣିଷ– The salt of the earth.

୧୧୦. ତାକୁ ଜଗିରଖି ଚଳ– Take him with a pinch of salt.

୧୧୧. ଚାଲୁଣି କହୁଛି ଛୁଞ୍ଚି ତୋ ଦେହରେ କଣା– The pot calls kettle black.

୧୧୨. ଠିକ୍ କହିଲେ ଠକ୍ ଠକ୍– Truth is often unpleasant.

୧୧୩. ବୁଭୁକ୍ଷିତ କିଂ ନ କରୋତି ପାପମ୍– A hungry man is an angryman.

୧୧୪. ଅଳ୍ପ ବିଦ୍ୟା ଭୟଙ୍କର– A little learning is a dangerous thing.

୧୧୫. ସୁନ୍ଦରେ ତୃପ୍ତିର ଅବସାଦ ନାହିଁ– A thing of beauty is joy for ever.

୧୧୬. ଠିକଣା ସମୟର କାମ ଲାଭପ୍ରଦ– A stich in time saves nine.

୧୧୭. ମୁକୁଟ ବିମଣ୍ଡିତ ଶିର ନୁହେଁ ଆହା ଶାନ୍ତିର ଆସ୍ପଦ– Uneasy lies the head that wears a crown.

୧୧୮. ବୁଡ଼ିଗଲା ଲୋକ କୁଟାଖିଅକୁ ଆଶ୍ରାକରେ– A drowning man catches a straw.

୧୧୯. ଯୋଗିଥାଳରେ ଅରୁଆ ଉଷୁନା ସମାନ– Beggers should not be choosers.

୧୨୦. ଚରିତ୍ର ହିଁ ଭାଗ୍ୟ– Character is destiny.

୧୨୧. କହିବାକୁ ମିଷ୍ଟ କଥା ନାହିଁ କଷ୍ଟ ବାଧା– Courtsey costs us nothing.

୧୨୨. ସୌନ୍ଦର୍ଯ୍ୟ ସୁନାଠୁ ବେଶି ଲୋଭାଏ– Beauty tempts more than gold.

୧୨୩. ଦୂର ବନ୍ଧୁ ସୁନ୍ଦର– Distance lends enchantment to view.

୧୨୪. ଅଭିଜ୍ଞତା ଶ୍ରେଷ୍ଠ ଶିକ୍ଷକ– Experience is the best of school masters.

୧୨୫. ସମସ୍ତଙ୍କ ପାଳି ଦିନେ ପଡ଼ିବ– Every dog has his day.

୧୨୬. ବିଫଳତା ସଫଳତାର ସୋପାନ– Failure is the pillar of success.

୧୨୭. ସବୁ ଶୁଣ, ଅଳ୍ପ କହ– Give everyone thy ear, but few thy tongue.

୧୨୮. ହସ ଜୀବନର ଔଷଧ– Humour is the salt of life.

୧୨୯. ଶେଷରେ ହସିବା ଲୋକ ସବୁଠୁ ଭଲ ହସେ– He laughs best who laughs last.

୧୩୦. ଆତୁରେ ନିୟମ ନାସ୍ତି– Necessity knows no law.

୧୩୧. ଆଳସ୍ୟ ସବୁ କଳୁଷର ମୂଳ– Idleness is the root of all evils.

୧୩୨. ଶୃଙ୍ଖଳା ବିନା ସ୍ୱାଧୀନତା ସମ୍ଭବ ନୁହେଁ– Liberty can not exist without discipline.

୧୩୩. ପ୍ରେମ ନଜାଣଇ ଜାତି ସଜନୀ ଲୋ, ପ୍ରେମ ନ ଜାଣଇ ପଦ– Love knows no barrier.

୧୩୪. ତରବର ହେଲେ ଗତି କମେ– More haste less speed.

୧୩୫. ଖାଲି ଖାଇକରି ମଣିଷ ବଞ୍ଚେନା– Man does not live by bread alone.

୧୩୬. ଠିକଣା ସାମୟରେ କାର୍ଯ୍ୟ କର– Make hay while the sun shines.

୧୩୭. ଅନ୍ନଚିନ୍ତା ଚମତ୍କାର– No man can be wise on an empty stomach.

୧୩୮. ସଫଳତା ପରି କେହି କୃତକାର୍ଯ୍ୟ ହୁଏନା– Nothing succeeds like success.

୧୩୯. ଜଣକର ଖାଦ୍ୟ ଅନ୍ୟ ଜଣକୁ ବିଷ– One man's meat is another man's poison.

୧୪୦. ଅନୁଭବର ବେଦନା ସେହି ଅନୁଭବେ– Only the wearer knows where the shoe pinches.

